ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ

*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**

**୬୫ ବର୍ଷ, ତୃତୀୟ ସଂଖ୍ୟା**
**ଅକ୍ଟୋବର, ୨୦୧୫**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୨୪୨୨୫୯୭, ୨୪୨୦୦୭୫**
*email :*
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ--
**ଡ. ଶୁଭେଂଦ୍ରମୋହନ ଶ୍ରୀଚଂଦନ ସିଂହ, ଇଂ ପ୍ରଭାତ କୁମାର ନନ୍ଦ, ପୂଜାରାଣୀ ମଲ୍ଲିକ ।**

### ଗଳ୍ପ ଓ ଜୀବନୀ



### କବିତା



### ଭ୍ରମଣ କାହାଣୀ



### ଜ୍ଞାନ-ବିଜ୍ଞାନ



### ମନୋରଞ୍ଜନ



## ଆମ ଚିଠି ମୁଣିରୁ

**ଚମ୍ପୁଆ, କେନ୍ଦୁଝରରୁ ରାସେଶ୍ୱର ମହାନ୍ତ--** ଏ ମାସ 'ସଂସାର'ରେ ପ୍ରକାଶିତ ଲେଖା 'ଭଲ କାମର ମୂଲ୍ୟ' ଖୁବ୍ ଉପାଦେୟ, 'ସ୍ନେସ୍‌ଓ୍ୱାକ୍' ଶିଶୁ କିଶୋରଙ୍କ ପାଇଁ କୌତୂହଳୋଦ୍ଦୀପକ, ସୁଲତାନ ଓ ଭଗବାନ, ଚାନ୍ଦିପୁରର ଚାନ୍ଦ, କାନ୍ଥରେ କଫି ଏବଂ ଭାବିଦେଖନ୍ତୁ ଖୁବ୍ ମନଛୁଆଁ ହୋଇପାରିଛି । 'ବଣ ମୁଲକରେ ପୁରୁଣା କଥା' ଲେଖକଙ୍କର ନିଜସ୍ୱ ଅନୁଭୂତି ପରି ମନେହେଲା । ସବୁଠାରୁ ଶିକ୍ଷଣୀୟ ହୋଇଛି ଧୂପକାଠି ଓ ଅଦ୍ଭୁତ ମହିଳା । ପ୍ରଚ୍ଛଦରେ ଶ୍ରେଷ୍ଠ ସୌନ୍ଦର୍ଯ୍ୟପୂର୍ଣ୍ଣ ବାସଗୃହର ଚିତ୍ର ଦେଖାଇ ଆମକୁ କୃତାର୍ଥ କରିଛନ୍ତି । ଗୁରୁ ଦିବସରେ ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରାଯାଇଥିଲେ ଭଲ ହୋଇଥାଆନ୍ତା ।

**ଆନନ୍ଦପୁରରୁ ରବୀନ୍ଦ୍ର ଚାନ୍ଦ--** ୫୪ ପୃଷ୍ଠାର ଏହି 'ସଂସାର' ପତ୍ରିକାଟିର ଓଡ଼ିଆ ଭାଷା ସାହିତ୍ୟ ପାଇଁ ଯେଉଁ ଅବଦାନ, ତାହା ଭାଷାରେ ପ୍ରକାଶ କରି ହେବନାହିଁ । ପତ୍ରିକାଟିକୁ ଭାଙ୍ଗିକରି ପଠାନ୍ତୁ ନାହିଁ । ମଝିରେ 'ସଂସାର'ଟି ଦାଗ ପଡ଼ିଯାଉଛି । ଏଥିପ୍ରତି ଦୃଷ୍ଟି ଦେବେ ।

**ଭଦ୍ରକ ସ୍ୱୟଂଶାସିତ କଲେଜରୁ ଅଧ୍ୟାପକ କମଳାକାନ୍ତ ଜେନା--** ଖୁସିର କଥା ଯେ– ମୁଁ ଧୀରେ ଧୀରେ ବୁଢ଼ା ହେଉଛି; ହେଲେ ସଂସାର ପତ୍ରିକା ଧୀରେ ଧୀରେ ଯୁବକ ହେଲାପରି ଲାଗୁଛି । ପ୍ରଚ୍ଛଦ ପୃଷ୍ଠା ବେଶ୍ ଆକର୍ଷଣୀୟ । ଗଳ୍ପ ଓ କବିତାରେ ପ୍ରସଙ୍ଗ ଅନୁଯାୟୀ ଚିତ୍ର ଦିଆଯିବାରୁ ସୁଖପାଠ୍ୟ ହୋଇପାରୁଛି । ଭାଷା, ସାହିତ୍ୟ, କଳା, ସଂସ୍କୃତି ଓ ବିଜ୍ଞାନ ବିଷୟ ପ୍ରତି ସମାନ ଧ୍ୟାନ ଦିଆଯାଉଛି ।

**ହରିଶଙ୍କର ରୋଡ଼, ବଲାଙ୍ଗୀରରୁ ପ୍ରଦୀପ କୁମାର ଦାଶ-** ଜୁଲାଇମାସ ସଂସାରରେ ଶବ୍ଦଧନ୍ଦାଟି ଅନନ୍ୟ, ଏହା ମସ୍ତିଷ୍କକୁ କିଛିସମୟ କସରତ କରାଇବାକୁ ସମର୍ଥ ହେଲା । ଏହାର ପ୍ରସ୍ତୁତକର୍ତ୍ତା ଶ୍ରୀ ନାୟକଙ୍କୁ ଅନେକ ସାଧୁବାଦ ଓ ଅଭିନନ୍ଦନ । ⁂



## ଶ୍ରଦ୍ଧାଞ୍ଜଳି

'ସଂସାର'ର ପୂଜ୍ୟ ପ୍ରତିଷ୍ଠାତା ରାମକୃଷ୍ଣ ନନ୍ଦଙ୍କର ଶ୍ରାଦ୍ଧଦିବସ ଅକ୍ଟୋବର ୨୮ ତାରିଖ ଉପଲକ୍ଷେ ତାଙ୍କର ମହାନ୍ ଆତ୍ମାକୁ ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ ।

**-ସଂସାର ପରିବାର**

## ଅଭିନନ୍ଦନ

ଆଗାମୀ ଦୁର୍ଗାପୂଜା ଅବସରରେ ଆମର ଏଜେଣ୍ଟ, ଗ୍ରାହକ, ଲେଖକ ତଥା ପାଠକ ଓ ପାଠିକାମାନଙ୍କୁ ଶାରଦୀୟ ଅଭିନନ୍ଦନ । ମା' ଦୁର୍ଗା ଆମର ଏ ସଂପର୍କକୁ ଆହୁରି ଦୃଢ଼ କରନ୍ତୁ । ଏତିକି କାମନା ।

ଆମର ପରିଚିତା ଲେଖିକା ତଥା ଶିଶୁ ସାହିତ୍ୟିକା ସୁଶ୍ରୀ ସବିତା ଭୋଇ ୨୦୧୪ ବର୍ଷ ପାଇଁ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ଦ୍ୱାରା କୃତୀ ଶିକ୍ଷକ ପୁରସ୍କାର ପ୍ରାପ୍ତ ହୋଇଛନ୍ତି । ଏହି ଗୌରବ ପାଇଁ ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛୁ ।

**-ସଂସାର ପରିବାର**

**ପ୍ରଚ୍ଛଦ--** ପ୍ୟାରଟ୍ ଟୁଲିପ୍ ଫୁଲର ଚିତ୍ର ପ୍ରଦତ୍ତ । ଏହି ଫୁଲଗୁଡ଼ିକ ଗାଢ଼ ଆକର୍ଷଣୀୟ ରଙ୍ଗ ଯୋଗୁ ଉଜ୍ଜ୍ୱଳ ଦେଖାଯାଏ । ଏଥିରେ କମଳା, ନାଲି, ଗୋଲାପି, ହଳଦିଆ, ନୀଳ ଓ ଧୂଷରିଆ-କଳା ରଙ୍ଗ ଥାଏ । ଏହା ପ୍ରଥମେ ଫ୍ରାନ୍ସରେ ଦେଖାଦେଇଥିଲା । ୟୁରୋପର କେତେକ ଦେଶ ଓ ଆମେରିକାରେ ମଧ୍ୟ ଏହା ଦେଖିବାକୁ ମିଳେ । ଏହାର ଡେମ୍ଫ ଖୁବ୍ ପତଳା ହୋଇଥିବାରୁ ଅଳ୍ପ ପବନରେ ପ୍ରାୟ ଭାଙ୍ଗିଯାଏ ।

# ନବକଳେବର

ଶ୍ରୀ ବଂଶୀଧର ଖୁଣ୍ଟିଆ

ଆମ ଗାଁ ଧରଣୀ । ମୋ ପିଲାଦିନର ସାଙ୍ଗ ନିତିଆର ପୁଅ । ନିତିଆ ଆଜି ନାହିଁ । ପାଞ୍ଚବର୍ଷ ତଳୁ ସେ ଏ ସଂସାରରୁ ବିଦାୟ ନେଲାଣି । ମୋର ବି ବୟସ ହେଲାଣି । କାଲି ମତେ ବି ଯିବାକୁ ହେବ । ଭଗବାନଙ୍କ କୃପାରୁ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକଟିଏ ହୋଇଥିଲି ବୋଲି ଅବସର ପରେ ଏବେ ପେନ୍‌ସନ୍ ଗଣ୍ଡାଏ ପାଉଛି । ଯା'ହେଉ ଏ ବୟସରେ ଚଳିଯାଉଛି । ହେଲେ ନିତିଆଟି ମଲା ଯାଏଁ ବଞ୍ଚିବା ପାଇଁ ସଂଗ୍ରାମ କରିଛି । ମାଟି ସହିତ ମାଟି ହୋଇଛି । ପାଣିକାଦୁଅରେ ଘାଣ୍ଟି ହୋଇ ମାଟିରେ ସୁନା ଫଳେଇଛି ।

ବିଚରା ସାଧାରଣ ମଣିଷଟିଏ ଥିଲା । ମାଛିକୁ ମ' ବୋଲି କହେନା । ତା'ପରି ସରଳ ନିଷ୍କପଟ ମଣିଷ ଜଣେ ଆମ ଅଞ୍ଚଳରେ ବିରଳ । ଅଭାବ ଅସୁବିଧାକୁ ଖାତିରି ନ କରି ସେ ଭଲମନ୍ଦରେ ଅନ୍ୟକୁ ସହଯୋଗର ହାତ ବଢ଼ାଉଥିଲା । ସେ ମୋର ସାଙ୍ଗ ହେଲେ ବି କେବେ ସାହାଯ୍ୟ ସହଯୋଗ ପାଇଁ ମୋ ପାଖରେ ହାତ ପାତିନି । ତା'ପୁଅ ଧରଣୀ ପ୍ରାଥମିକ ବିଦ୍ୟାଳୟରେ ମୋର ଛାତ୍ର ଥିଲା । ଅଭାବ ଅସୁବିଧା ସମୟରେ ମୁଁ ତାକୁ କିଛି ସାହାଯ୍ୟ କରିବାକୁ କହିଲେ ସେ ମୋତେ କହେ, "ଆରେ ମୁଁ ତୋର ସାଙ୍ଗ ହେଲେ ବି ତୁ ମୋର ପୁଅର ଗୁରୁ । ତୋ'ପାଖରୁ କ'ଣ ନେବି ? ତୋ ଋଣ ଆମେ ପରିଶୋଧ କରିପାରିବୁନି । ଧରଣୀ ମୋ ପୁଅ ନୁହେଁ । ତୋ ପୁଅ, ସେ ତୋତେ ଲାଗିଲା । ତାକୁ ଭଲ ମଣିଷଟିଏ କରିବୁ ।"

ଧରଣୀ ଆଜି ପଚିଶ ବର୍ଷର ଯୁବକ । ବାପା ନିତିଆ ପରି ଖୁବ୍ ଶାନ୍ତ, ସରଳ ଓ ଭଦ୍ର । ପରୋପକାରୀ ଆଉ ମଧ୍ୟ କଠୋର ପରିଶ୍ରମୀ । ସହଜରେ ଭାଙ୍ଗିପଡ଼ିବା ବା ହାରିଯିବା ପିଲା ସେ ନୁହେଁ । ପିଲାବେଳେ ସେ ତା ବାପାଙ୍କ ସହ ବିଲବାଡ଼ିରେ ଖଟିଛି । ଭୋକ ଉପାସରେ ରହିଛି । ମଣିଷର ପେଟ କଷ୍ଟ କେତେ ଯନ୍ତ୍ରଣାଦାୟକ, ସେ ଅନୁଭବ କରିଛି । ସେ ନୂଆ କରି କଲେଜ ଯାଉଥିବାବେଳେ ତା' ବାପା ତାକୁ ଛାଡ଼ି ଚାଲିଗଲା । ତା' ମା'କୁ ଚାରିଦିଗ ଅନ୍ଧାର ଦେଖାଗଲା; କିନ୍ତୁ ସେ ଭାଙ୍ଗି ପଡ଼ି ନ ଥିଲା । ଗାଁ'ଠାରୁ ସହର ଯାଏଁ ଟ୍ୟୁସନ୍ କରି ସେ ପାଠ ପଢ଼ିଲା । ମା' ଆଉ ସାନଭଉଣୀ ମୁହଁରେ ହସ ଭରିଲା । ସୁନାକୁ ନିଆଁରେ ପୋଡ଼ିଲେ ଅଧିକ ଉଜ୍ଜ୍ୱଳ ହେଲା ପରି ଦୁଃଖ ଆଉ ଯନ୍ତ୍ରଣା ଭିତରେ ସେ ଅଧିକ ଶକ୍ତି ଓ ସାମର୍ଥ୍ୟ ଲାଭ କଲା । ଏ ସଂସାରରେ ତ ଭଗବାନ ସେହିମାନଙ୍କୁ ସାହାଯ୍ୟ କରନ୍ତି, ଯେଉଁମାନେ କଠୋର ପରିଶ୍ରମୀ ଓ ପରୋପକାରୀ । ଧରଣୀକୁ ଏ ଗାଁର ସମସ୍ତେ ଭଲ ପାଆନ୍ତି । ପ୍ରଶଂସା କରନ୍ତି । ସେ ବି.ଏ ପାସ୍ କଲା । ଚାକିରି କରିବା ଆଗରୁ ଆମେ କେତେଜଣ ମିଶି ତାକୁ ବ୍ୟାଙ୍କ୍ ଋଣରେ ଅଟୋ ଖଣ୍ଡେ କରେଇଦେଲୁ । ଗାଁ'ରୁ ସହର ପ୍ରଥମ କରି ପ୍ରତିଦିନ ତା ଅଟୋ ଚାଲିଲା । ଧନ ପଛରେ ନ ଗୋଡ଼େଇ ସେ ମଣିଷର ମନକୁ ଜୟ କଲା । ପ୍ରଚଣ୍ଡ ଶୀତ, ଭୟଙ୍କର ବର୍ଷା ଅବା ବୈଶାଖର ମୁଣ୍ଡଫଟା ଖରା ତା' ଦୃଢ଼ ମନୋବଳ, ସାହସ ଓ ଶକ୍ତି ପାଖରେ ହାର୍ ମାନିଲେ । ଅଟୋ ମାଧ୍ୟମରେ ସେ ମଣିଷର ସେବା କଲା । ଯିଏ ଯାହା ଦେଲା, ପ୍ରତିବାଦ ନ କରି ହସି ହସି ରଖିଲା । ଗରିବ ପରିବାରଟିର ହସ, ଖୁସି, ଆନନ୍ଦ ଫେରିଆସିଲା । ଦୁଇଟି ବର୍ଷ ମଧ୍ୟରେ ତାର ବ୍ୟାଙ୍କ୍ ଋଣ ମଧ୍ୟ ପରିଶୋଧ ହୋଇଗଲା ।

ଏହି ଦିନ କେତୁଟା ତଳର କଥା । ସେଦିନ ସନ୍ଧ୍ୟାବେଳେ ଧରଣୀ ଆସି ଆମ ଘରେ ପହଞ୍ଚିଲା । ମୋତେ ପ୍ରଣାମ କରି ମୁହଁ ତଳକୁ କରି ଠିଆ ହେଲା । ମୁଁ କହିଲି, "ଆରେ ଧରଣୀ ! ତୋର ବାବା ସବୁ ଭଲ ତ ?"

ସେ କହିଲା, "ସାର୍ ! ଆପଣଙ୍କ ଆଶୀର୍ବାଦରୁ ସବୁ ଭଲ । ଏବେ ଅଟୋ ନେଇ ଡାକ୍ତରଖାନାରୁ ଫେରୁଛି । ଆପଣ ଯଦି କିଛି ନ ଭାବନ୍ତେ, କଥାଟିଏ କହନ୍ତି ।"

"ଆରେ ମୁଁ ଭାବିବି କ'ଣ ? କହ ବାପା କହ ।"

ମୋର ଏ ଅଭୟ କଥା ଶୁଣି ସେ କହିଲା, "ସାର୍ ! ରଥଯାତ୍ରା ଆଉ ଦୁଇଦିନ ରହିଲା । କାଲି ରେଳରେ ଆମ ଗାଁ'ର କିଛି ଲୋକ ପୁରୀ ଯାଉଛନ୍ତି । ପ୍ରଭୁଙ୍କୁ ରଥରେ ଦର୍ଶନ କରିବାକୁ ମୁଁ ଯିବାକୁ ବାହାରିଛି । ଆପଣ ମୋ ସାଙ୍ଗରେ ଗଲେ ପ୍ରଭୁଙ୍କୁ ଦର୍ଶନ କରିବା ମୋର ସଫଳ ହେବ ।"

ମୋ ପାଟିରୁ ହଠାତ୍ କିଛି କଥା ବାହାରିଲା ନାହିଁ । ଧରଣୀ ମୋର ସାଙ୍ଗର ପୁଅ । ମୋର ଛାତ୍ର ମଧ୍ୟ । ତାର ଭକ୍ତି, ସ୍ନେହ, ଶ୍ରଦ୍ଧା ମୋ ପ୍ରାଣରେ ଅପୂର୍ବ ଆନନ୍ଦ ଭରିଦେଲା; ମାତ୍ର ମୁଁ ଯେ ଯିବା ପାଇଁ ଅକ୍ଷମ ।

ମୁଁ କହିଲି, "ବାବୁରେ ! ତୋ ପାଇଁ ଆଜି ମୁଁ ଗର୍ବ କରୁଛି । ଦୀର୍ଘ ଉଣେଇଶି ବର୍ଷ ପରେ ମହାପ୍ରଭୁ ନବକଳେବର ହୋଇଛନ୍ତି । ନୂତନ ଶରୀର ନେଇ ସେ ଏଥର ରଥକୁ ବିଜେ କରିବେ । ବଡ଼ଦାଣ୍ଡରେ ଲକ୍ଷ ଲକ୍ଷ ଭକ୍ତଙ୍କୁ ଦର୍ଶନ ଦେଇ ସେ ମାଉସୀମା'ଙ୍କ କୋଳକୁ ଚାଲିଯିବେ । ତୁ ଯା' ବାପ, ରଥ ଉପରେ ଚକାଡୋଳାଙ୍କୁ ଦର୍ଶନ କର । ରଥରେ ତାଙ୍କୁ ଦର୍ଶନ କଲେ ପୁନର୍ଜନ୍ମ ହୁଏନାହିଁ । ଏହା ଛଡ଼ା ସେତେବେଳେ ଭକ୍ତ ତାଙ୍କୁ ଯାହା ମାଗେ, ସେ ପୂରଣ କରନ୍ତି । ମୋ ଅବସ୍ଥା ତୁ ତ ଦେଖୁଛୁ । ବୟସ ହେଲାଣି । ପାଦ ଦୁର୍ବଳ । ମୁଁ କ'ଣ ଯାଇ ପାରିବି !"

ମୋ ଅବସ୍ଥା ଧରଣୀ ବୁଝିଲା ଓ ଫେରିଗଲା ।

ପାଞ୍ଚଦିନ ପରେ ସେ ପୁଣି ମୋ ପାଖରେ ପହଞ୍ଚିଲା । ବଡ଼ ବ୍ୟସ୍ତ ଜଣାପଡୁଥାଏ । ମୁଁ ପଚାରିଲି, "ଆରେ ଧରଣୀ ! ଜନସମୁଦ୍ର ଭିତରେ ବଡ଼ଦାଣ୍ଡରେ ଠିଆ ହୋଇ ଚକାଡୋଳାଙ୍କୁ ରଥ ଉପରେ ଦର୍ଶନ କଲୁ ତ ? ମହାପ୍ରସାଦ ଆଣିଥିବୁ ? ଦେ ବାପା, ମୁଁ ଟିକିଏ ପାଇଦିଏ ।"

ମୋ କଥା ଶୁଣି ତା ମୁହଁ ଶୁଖିଗଲା । ସେ କହିଲା, "ଆପଣ ମୋ ସାଙ୍ଗରେ ଯାଇଥିଲେ ବଡ଼ ଅସୁବିଧାରେ ପଡ଼ିଥା'ନ୍ତେ । ପ୍ରଭୁଙ୍କର ଇଚ୍ଛା ।"

"କିରେ କ'ଣ ହେଲା କି ? କଥାରେ କହନ୍ତିନି ତାଙ୍କ ଡୋରି ନ ଲାଗିଲେ ତାଙ୍କ ପାଖକୁ କେହି ଯାଇ ପାରନ୍ତି ନାହିଁ । ତୋର କିଛି ଅସୁବିଧା ହେଲା କି ?"

ମୋ ବ୍ୟସ୍ତତା ଶୁଣି ସେ କହିଲା, "ସାର୍ ! ନବକଳେବର ପାଇଁ ଏଥର ପୁରୀକୁ ସରକାର ଅନେକ ସ୍ୱତନ୍ତ୍ର ଟ୍ରେନ୍‌ର ବ୍ୟବସ୍ଥା କରିଥିଲେ । ମୁଁ ମୋର କେତେଜଣ ସାଙ୍ଗଙ୍କ ସହ ରାତି ସାତଟା ବେଳେ ଯାଇ ଷ୍ଟେସନ୍‌ରେ ପହଞ୍ଚିଗଲି । ଷ୍ଟେସନ୍‌ରେ ସୋରିଷ ପକେଇବାକୁ ଜାଗା ନ ଥିଲା । ସମସ୍ତେ ପୁରୀ ଯାତ୍ରୀ । ଅସମ୍ଭବ ଭିଡ଼ ଓ ଠେଲାପେଲାରେ ମୁଁ ଟ୍ରେନ୍ ଉପରକୁ ଉଠିପାରିଲି ନାହିଁ । ମୋ ସାଙ୍ଗମାନେ ଉଠିଗଲେ । ଗାଡ଼ି ଛାଡ଼ିଦେଲା । ମୁଁ ପରବର୍ତ୍ତୀ ଗାଡ଼ିକୁ ଅପେକ୍ଷା କଲି । କିଛି ସମୟ ପରେ ଷ୍ଟେସନର ପୋଲ ତଳୁ ଜଣେ ନାରୀ କଣ୍ଠର ବିକଳ କ୍ରନ୍ଦନ ମୁଁ ଶୁଣିବାକୁ ପାଇଲି । ମୁଁ ଯାଇ ଦେଖିଲି– ଆଠ ଦଶ ବର୍ଷର ପିଲାଟିଏ ତା' କୋଳରେ ଶୋଇଛି ।




ମୁହଁ ସାରା ରକ୍ତ । କପାଳ ଓ ମୁଣ୍ଡ ଫାଟିଯାଇଛି । ଭିକାରୁଣୀଟିଏ । ପୋଲରୁ ତଳକୁ ଓହ୍ଲାଉଥିବା ସମୟରେ ପୁଅଟି ତାର ଶିଡ଼ିରୁ ତଳକୁ ଖସି ପଡ଼ିଛି । ଲୋକେ ଦେଖୁଛନ୍ତି । ଦୁଃଖ କରୁଛନ୍ତି; ମାତ୍ର କେହି ତାକୁ ସାହାଯ୍ୟ କରୁ ନ ଥାନ୍ତି । ମୁଁ ସାର୍ ଏ ଅବସ୍ଥାରେ ତାକୁ ଛାଡ଼ି କିପରି ଯାଇଥା'ନ୍ତି ? ତାକୁ ଗାଡ଼ି କରି ଡାକ୍ତରଖାନା ଆଣିଲି । ପିଲାଟିର ମୁଣ୍ଡରେ ଆବଶ୍ୟକ ପରୀକ୍ଷା ନିରୀକ୍ଷା ହେଲା । ସେ ଡାକ୍ତରଖାନାରେ ଚାରିଦିନ ରହିଲା । ମୋତେ ବି ତାଙ୍କ ପାଖରେ ରହିବାକୁ ହେଲା । ପିଲାଟି ସୁସ୍ଥ ହେବାରୁ ତାଙ୍କୁ ନେଇ ଷ୍ଟେସନ୍‌ରେ ଛାଡ଼ିଲି । ପ୍ରଭୁଙ୍କର ଦୟାରୁ ସେ ବଞ୍ଚିଯାଇଛି । ମୁଁ ଆଉ ପୁରୀ ଯାଇ ପାରିଲି ନାହିଁ ।"

ମୁଁ କହିଲି, "ବାପା ଧରଣୀରେ! ତୁ ମୋର ଶିକ୍ଷାଦାନକୁ ସାର୍ଥକ କରିଛୁ । ଏ ବୟସରେ ମୁଁ ଗର୍ବ କରୁଛି । ତୁ ପୁରୀ ଯାଇପାରିଲୁ ନାହିଁ ସତ; କିନ୍ତୁ ଜଗନ୍ନାଥ ତୋ ପୂଜା ଗ୍ରହଣ କରିଛନ୍ତି । ମାନବ ସେବା ପରା ମାଧବଙ୍କ ସେବା! ପ୍ରଭୁଙ୍କର ଏ କାର୍ଯ୍ୟ ତୋର କରିବାର ଥିଲା । ସେଥିପାଇଁ ତୁ ପ୍ରଥମ ଗାଡ଼ିରେ ଯାଇପାରିଲୁ ନାହିଁ । ପ୍ରଭୁ ନବକଳେବର ହେଲେ । ପିଲାଟିର ବି ନବକଳେବର ହେଲା । ପ୍ରଭୁଙ୍କ ପରି ତାର ବି ନୂଆଜନ୍ମ ହେଲା । ତୋର ନବକଳେବର ଦର୍ଶନ ବିଫଳ ହୋଇନାହିଁ । ଦୁଃଖ କରନା । ପ୍ରଭୁ ତୋତେ ନିରାଶ କରିବେ ନାହିଁ । ପିଲାଟିର କଥା ବୁଝୁଥିବୁ ।"

"ହଁ ସାର !" ଏତିକି କହି ଧରଣୀ ମୋତେ ପ୍ରଣାମ କରି ଚାଲିଗଲା ।

*ମଉଦା, ମାଧବନଗର, ଭଦ୍ରକ*

❋❋

## ଏ ପ୍ରଶ୍ନଗୁଡ଼ିକ ସମାଧାନ କର

୧ । ଗୋଟିଏ ବାକ୍ୟ କହ, ଯହିଁରେ ମାତ୍ର ଦୁଇଟି ଅକ୍ଷର ଥିବ ।

୨ । କେଉଁ ତିନି ଅକ୍ଷର ବିଶିଷ୍ଟ ଶବ୍ଦରୁ ଗୋଟିଏ ଅକ୍ଷର କାଢ଼ିନେଲେ ଦଶ ରହିବ ?

୩ । କେଉଁ ଗଛ ମୂଳରେ ଗଣ୍ଡି ନ ଥାଇ ଡାଳ ଥାଏ ?

୪ । ୧ରୁ ୯ ପର୍ଯ୍ୟନ୍ତ ସଂଖ୍ୟାଗୁଡ଼ିକୁ ଏପରି ସଜାଅ, ଯାହାର ଫଳ ୧୦୦ ହେବ ।

(ଉତ୍ତର ୪୬ ପୃଷ୍ଠାରେ)



# ଭରିଦିଅ ସୁଖ ଶାନ୍ତି

ଶ୍ରୀ ଶ୍ୟାମସୁନ୍ଦର ବିଶ୍ୱାଳ

ଅଗରବତିରେ ନଗର ବାସୁଛି
ଝୁଣାରେ ମହକେ ଗାଁଆଁ
ମହ ମହ ଗନ୍ଧେ ଶହ ଶହ ପ୍ରାଣ
ତୁମକୁ ଖୋଜୁଛି ମାଆ ।
ଆସ ମାଆ ଦୁର୍ଗେ ମରତ ଧାମକୁ
ଶରତର ଶୁଭକ୍ଷଣେ
କାହିଁ କେତେ ଦିନୁଁ ଚାହିଁ ତୁମ ପଥ
ଭକତ ଯେ ଦିନ ଗଣେ ।
ବିଜ୍ଞାନ ବଳରେ ଆଜି ଏ ମଣିଷ
ଆଗେଇ ଚାଲିଲେ ସୁଦ୍ଧା
ପାଇ ତ ନ ପାରେ ଜୀବନରେ ଶାନ୍ତି
ସନ୍ତୋଷର କେଇ ବୁନ୍ଦା ।
କେତେ କେତେ ଶକ୍ତି ସଂଗ୍ରହ କରେ ସେ
ତଥାପି ତ ଶକ୍ତିହୀନ
ଏହି ଦୁର୍ଦ୍ଦିନରେ ମା'ଗୋ ଶକ୍ତିମୟୀ,
ଆସି ହୁଅ ଅବତୀର୍ଣ୍ଣ !
ମଣିଷର ଧାରା ଢାଳି ଏ ସଂସାରେ
ଭରିଦିଅ ସୁଖ ଶାନ୍ତି !
ଦୂରେଇଯାଉ ଗୋ ହିଂସା ଅହଙ୍କାର
ପାପ-ତାପ-ଭୟ-ଭ୍ରାନ୍ତି !।

*ମାଧ୍ୟମିକ ପ୍ରଶିକ୍ଷଣ ବିଦ୍ୟାଳୟ, ବଲାଂଗୀର-୧* ❋❋

---



ଅମର - ଗୋଟିଏ ପହେଳିର ଉତ୍ତର କହିଲୁ, ଦେଖିବା ତୋର ସାଧାରଣ ଜ୍ଞାନ ଅଛି କି ନାହିଁ?

କୁମର - ତେବେ ପଚାର ।

ଅମର- ହାତୀକୁ ଛୁଞ୍ଚିକଣାରେ ପାର ହେବା ଆଗରୁ କେମିତି ରୋକା ଯାଇପାରିବ ?

କୁମର - ସହଜ ଉତ୍ତର । ତା' ଲାଙ୍ଗୁଡ଼ରେ ଗୋଟିଏ ଗଣ୍ଠି ପକାଇ ଦିଅ ।

★ ★ ★

ଥରେ ଜଣେ ବିଦେଶୀ ପର୍ଯ୍ୟଟକ ଏକ ଗାଆଁକୁ ବୁଲି ଗଲେ । ଗାଆଁମୁଣ୍ଡରେ ଜଣକୁ ଦେଖି ପଚାରିଲେ - ଏହି ଗାଆଁରେ କେହି ମହାପୁରୁଷ ଜନ୍ମ ନେଇଛନ୍ତି କି ?

ଲୋକଟି ଉତ୍ତରଦେଲା - ନାଇଁ ଆଜ୍ଞା, ସବୁବେଳେ ପିଲା ହିଁ ଏହି ଗାଆଁରେ ଜନ୍ମନିଅନ୍ତି ।

# ସରଗ ସମାନ ଆହା ଅଟେ ସେହି ଘର

ଶ୍ରୀମତୀ ସୁଷମା ମିଶ୍ର

ଗୋଟିଏ ଗ୍ରାମରେ ଜେଜେବାପା ସଂଗ୍ରାମବାବୁ, ପୁଅ ନିର୍ମଳ, ବୋହୂ ସୁନିତା, ନାତି ସୋମୁ ଓ ନାତୁଣୀ ସୁମି ଏକତ୍ର ରହୁଥାନ୍ତି । ସଂଗ୍ରାମବାବୁ ତାଙ୍କ କର୍ମକ୍ଷେତ୍ରରୁ ଅବସର ନେବାର କିଛି ଦିନ ପରେ ତାଙ୍କ ପତ୍ନୀ ତାଙ୍କୁ ଛାଡ଼ି ପରଧାମକୁ ଚାଲି ଯାଇଥିଲେ । ପୁଅ ନିର୍ମଳ, ନାମ ଯେମିତି ହୃଦୟ ସେମିତି, କାର୍ଯ୍ୟ ମଧ୍ୟ ସେହିପରି । ବୋହୂ ସୁନିତା, ବୋହୂ ତ ନୁହେଁ- ତାଙ୍କ ଝିଅ । ନାତିନାତୁଣୀ ଦୁଇଜଣ ପଞ୍ଚମ ଏବଂ ଷଷ୍ଠ ଶ୍ରେଣୀରେ ପଢ଼ନ୍ତି । ପୁଅ ନିର୍ମଳ କର୍ମକ୍ଷେତ୍ରରୁ ଫେରିଲେ ପ୍ରଥମେ ବାପାଙ୍କ ଭଲମନ୍ଦ ପଚାରି ବୁଝନ୍ତି । ସୁନିତା ପାରୁପର୍ଯ୍ୟନ୍ତ ଶ୍ୱଶୁରଙ୍କର ଯେପରି କିଛି ଅସୁବିଧା ନ ହେବ, ସେଥିପ୍ରତି ଧ୍ୟାନ ଦେଇଥା'ନ୍ତି ।

ସୋମୁ ଏବଂ ସୁମି ପାଠପଢ଼ା ବ୍ୟତୀତ ଦୁଇଘଣ୍ଟା ଜେଜେଙ୍କ ପାଖରେ ବସି ମଜା ଖୁସି ନ କଲେ ତାଙ୍କ ମନ ମାନେନି । ସଂଗ୍ରାମବାବୁ ପ୍ରତ୍ୟେକ ଦିନ ଠାକୁର ପୂଜା କରନ୍ତି । ପୁରାଣ ପଢ଼ନ୍ତି । ବିଭିନ୍ନ ପତ୍ରପତ୍ରିକା ପଢ଼ନ୍ତି । ନିକଟରେ ଥିବା ତାଙ୍କ ସମବୟସ୍କ ବ୍ୟକ୍ତିମାନଙ୍କ ସହିତ କଥାବାର୍ତ୍ତା ହୋଇ କିଛି ସମୟ ବିତାନ୍ତି । ତାଙ୍କ ପତ୍ନୀ ତାଙ୍କୁ ଛାଡ଼ି ଚାଲିଯାଇଥିଲେ ମଧ୍ୟ ତାଙ୍କର ଅନୁପସ୍ଥିତି ଅନୁଭବ କରିବାକୁ ସେ ସମୟ ପାଆନ୍ତି ନାହିଁ ।

ସେଦିନ ଛୁଟି ଥାଏ । ଘରେ ସମସ୍ତେ ଥାଆନ୍ତି । ପରିବାରରେ ସମସ୍ତଙ୍କ ସହିତ ଏତେ ଖୁସିରେ ଥାଇ ମଧ୍ୟ ସଂଗ୍ରାମବାବୁଙ୍କ ମନରେ ଏକ ପ୍ରଶ୍ନ ଉଙ୍କି ମାରିଲା ଯେ ସବୁଠାରୁ ସୁନ୍ଦର କ'ଣ ? ଏହା ଜାଣିବା ପାଇଁ ମନ୍ଦିର ଯିବା ବାହାନାରେ ସେ ଘରୁ ବାହାରି ନିକଟରେ ଥିବା ଗୋଟିଏ ଆଶ୍ରମରେ ପହଞ୍ଚିଲେ ଏବଂ ତପସ୍ୱୀଙ୍କୁ ପ୍ରଣାମ କରି ନିଜର ଅଭିଳଷିତ ପ୍ରଶ୍ନ ପଚାରିଲେ । ତପସ୍ୱୀ ଉତ୍ତରଦେଲେ– ଶ୍ରଦ୍ଧା ହେଉଛି ସବୁଠାରୁ ସୁନ୍ଦର । ଶ୍ରଦ୍ଧା ଗୋଟିଏ ମାଟି ପିଣ୍ଡୁଳାକୁ ବିଭିନ୍ନ ଆକୃତିର ମୂର୍ତ୍ତିରେ ପରିଣତ କରିପାରେ ।

ତାଙ୍କ କଥାରେ ସଂଗ୍ରାମବାବୁ ସନ୍ତୁଷ୍ଟ ହେଲେନାହିଁ । ଆଶ୍ରମରୁ ବାହାରି ଆଗକୁ ଚାଲିଲେ । ତା'ପରେ ସେ ଜଣେ ଭକ୍ତଙ୍କୁ ଭେଟି ତାଙ୍କୁ ସେହି ପ୍ରଶ୍ନ ପଚାରିଲେ । ଭକ୍ତ କହିଲେ, "ପ୍ରେମ ହିଁ ସବୁଠାରୁ ସୁନ୍ଦର । କାରଣ ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ଗୋପୀମାନଙ୍କର ଅନାବିଳ ପ୍ରେମରେ ବାନ୍ଧି ହୋଇଯାଇଥିଲେ ।" ଏହି ଉତ୍ତର ମଧ୍ୟ ତାଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ସେ ପୁଣି ଆଗକୁ ଚାଲିଲେ । ତା'ପରେ ଜଣେ ସୈନିକଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ସେ ନିଜ କର୍ମକ୍ଷେତ୍ରରୁ କିଛିଦିନ ଛୁଟି ପାଇ ନିଜ ଘରକୁ ଫେରୁଥାନ୍ତି । ସେ ତାଙ୍କୁ ସେହି ଏକା ପ୍ରଶ୍ନ ପଚାରିଲେ । ସୈନିକ ଉତ୍ତରଦେଲେ, "ସୁନ୍ଦରତା ମଧ୍ୟରେ 'ଶାନ୍ତି' ହେଉଛି ସର୍ବୋତ୍ତମ ।" ଶେଷକୁ ସେ ନିଜ ପ୍ରଶ୍ନର ଉତ୍ତରରେ ସନ୍ତୁଷ୍ଟ ନ ହୋଇ ଆଉ ଆଗକୁ ନ ଯାଇ ଘରକୁ ଫେରିଲେ ।

ସେତେବେଳକୁ ସେ ବହୁତ ବାଟ ଚାଲି ଆସିଥିବାରୁ ଥକି ପଡ଼ିଥିଲେ । ଅନେକ ସମୟ ପର୍ଯ୍ୟନ୍ତ ଘରୁ ବାହାରି ଯାଇଥିବାରୁ ଘରେ ବ୍ୟସ୍ତ ହୋଇ ସମସ୍ତେ ତାଙ୍କର ଫେରିବା ବାଟକୁ ବ୍ୟାକୁଳ ହୋଇ ଚାହିଁ ରହିଥିଲେ । ଘର ନିକଟ ହେବା ମାତ୍ରେ ସୋମୁ ଆଉ ସୁମି ଦୌଡ଼ିଆସି ଜେଜେଙ୍କୁ କୁଣ୍ଢାଇ ପକାଇଲେ । ଦୁହିଙ୍କ ଆଖି ଲୁହରେ ଭରିଗଲା । ପୁଅବୋହୂ ପାଦତଳେ ଲୋଟି



ପଡ଼ିଲେ । ଏ ସବୁ ଦୃଶ୍ୟ ଦେଖି ତାଙ୍କ ମନରେ ଉଠିଥିବା ପ୍ରଶ୍ନର ଉତ୍ତର ସେ ନିଜେ ପାଇଗଲେ ବୋଲି ଅନୁଭବ କଲେ ।

ସେ ନିଜେ ହୃଦୟଙ୍ଗମ କଲେ– ମୁଁ ପ୍ରକୃତରେ ବାଟବଣା ହୋଇଯାଇଥିଲି । ଶ୍ରଦ୍ଧା, ପ୍ରେମ ଓ ଶାନ୍ତି ଏହି ତିନିଗୋଟି ଜିନିଷ ମୋ ନିଜ ଘରେ ଅଛି । ସେ ସମସ୍ତଙ୍କୁ କହିଲେ, "ମୁଁ ଯେଉଁ ଉତ୍ତର ଖୋଜିବାକୁ କାହାକୁ ନ ଜଣାଇ ଘର ଛାଡ଼ି ଯାଇଥିଲି, ତାହା ଏବେ ପାଇଗଲି । ଶ୍ରଦ୍ଧା, ପ୍ରେମ, ଶାନ୍ତିପୂର୍ଣ୍ଣ ଘର ହେଉଛି ସବୁଠାରୁ ସୁନ୍ଦର ।

ସେଥିପାଇଁ ଯଥାର୍ଥରେ କବି କହିଛନ୍ତି–

'ସରଗ ସମାନ ଆହା ଅଟେ ସେହି ଘର
ପରସ୍ପର ଥାଏ ଯହିଁ ସ୍ନେହ ନିରନ୍ତର ।'

ତେଣୁ ଆଜିଠାରୁ ତୁମମାନଙ୍କୁ ଛାଡ଼ି ମୋର ଆଉ କେଉଁଆଡ଼େ ଯିବା ଆବଶ୍ୟକତା ପଡ଼ିବ ନାହିଁ ।" ପିଲାମାନେ ଖୁସିରେ ନାଚିଗଲେ ।

*ନୂଆପଡ଼ା, ବାଲିସାହି, ମଧୁପାଟଣା, କଟକ- ୭୫୦୧୦*

# ସାଧାରଣଜ୍ଞାନ ପରୀକ୍ଷା

ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧ । ଜ୍ୱାଳାମୁଖୀ ପର୍ବ (Jwalamukhi Festival) କେଉଁ ରାଜ୍ୟରେ ପାଳନ କରାଯାଇଥାଏ ?

୩ । ''To Hell With Hockey'', କେଉଁ ହକି ଖେଳାଳିଙ୍କର ଆତ୍ମଜୀବନୀ ?

୪ । କେଉଁ ମସିହାରେ ପ୍ରଖ୍ୟାତ ଲେଖିକା ଅରୁନ୍ଧତୀ ରାୟ ତାଙ୍କର ବହୁଚର୍ଚ୍ଚିତ ଉପନ୍ୟାସ 'The God of Small Things' ପାଇଁ ବୁକ୍‌ର ପୁରସ୍କାର ପାଇଥିଲେ ?

୫ । ଗୁଜୁରାଟର ବଡ଼ୋଦରା (Vadodara) ସହର କେଉଁ ନଦୀକୂଳରେ ଅବସ୍ଥିତ ?

୬ । କେଉଁ ତାରିଖରେ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଇନ୍ଦିରାଗାନ୍ଧୀ ଆତତାୟୀଙ୍କ ବର୍ବରୋଚିତ ଗୁଳିମାଡ଼ରେ ନିହତ ହୋଇଥିଲେ ?

୭ । ସଚିନ୍ ରମେଶ ତେନ୍ଦୁଲକର ୧୦,୦୦୦ତମ ଅନ୍ତର୍ଜାତୀୟ ଏକଦିବସୀୟ ରନ୍ କରିବାବେଳେ କେଉଁ ବୋଲରଙ୍କର ସାମ୍ନା କରୁଥିଲେ ?

୮ । ଚଣ୍ଡିଗଡ଼ର ଚର୍ଚ୍ଚିତ ରକ୍ ଗାର୍ଡ଼େନ୍ ପ୍ରଥମଥର ପାଇଁ କେଉଁ ମସିହାରେ ସାଧାରଣ ଜନତାଙ୍କ ପାଇଁ ଖୋଲାଯାଇଥିଲା ?

୯ । ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଜନ୍ମଗ୍ରହଣ କରି ଲୋକସଭାର ବାଚସ୍ପତି ପଦବୀ ଅଳଙ୍କୃତ କରିଥିବା ପ୍ରଥମ ବ୍ୟକ୍ତି କିଏ ?

୧୦ । ୧୯୫୬ ମସିହାରେ ଦିଲ୍ଲୀର କେଉଁ ହୋଟେଲ୍ ଭାରତର ପ୍ରଥମ ପଞ୍ଚ–ତାରକା ଡିଲକ୍ସ ହୋଟେଲ୍‌ର ମାନ୍ୟତା ପାଇଥିଲା ?

*ଗ୍ରା/ପୋ:ଅ:- ଦୁର୍ଗାପୁର, ତାଳଚେର, ଅନୁଗୁଳ୭୫୯୧୦୦*

(ଉତ୍ତର ୩୩ ପୃଷ୍ଠାରେ)






# ଭାରତର ଜାତୀୟ ଗ୍ରନ୍ଥ

ଡ. ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ

ଆମ ସମ୍ବିଧାନ ଆମ ଭାରତର ଜାତୀୟ ଗ୍ରନ୍ଥ । ଛବିଶ, ଜାନୁଆରୀ ଏହାର ଜନ୍ମଦିବସ । କାରଣ ଊଣେଇଶ ଶହ ପଚାଶ, ଛବିଶ ଜାନୁଆରୀରେ ଏ ଦେଶର ଜନଗଣ ସମ୍ବିଧାନକୁ କାର୍ଯ୍ୟକାରୀ କରିଥିଲେ । ପ୍ରକୃତରେ, ଊଣାଇଶ ଶହ ତିରିଶରେ ଏଇଦିନ ଭାରତ ସ୍ୱାଧୀନ ବୋଲି ଭାରତର ଜାତୀୟ କଂଗ୍ରେସ ପ୍ରଥମେ ଘୋଷଣା କରିଥିଲା ।

ଭାରତର ମହାନ୍ ନେତା ଜଓ୍ୱାହରଲାଲ ଜୀ ଲାହୋର କଂଗ୍ରେସ ଅଧିବେଶନରେ ଜାତିପିତା ମହାତ୍ମାଗାନ୍ଧୀଙ୍କ ସ୍ୱୀକୃତିରେ ଏ ଯୁଗାନ୍ତକାରୀ ଘୋଷଣା କରିଥିଲେ । ଏହା ସତ ଯେ କଂଗ୍ରେସର ମୁକ୍ତି ସଂଗ୍ରାମରେ ବ୍ୟତିବ୍ୟସ୍ତ ହୋଇ ଇଂରେଜ ସରକାର ଊଣାଇଶ ଶହ ପଇଁଚାଳିଶ ବେଳକୁ ଭାରତ ଛାଡ଼ି ଯିବାକୁ ଠିକ୍ କରିନେଲା । କଂଗ୍ରେସ ବି ସ୍ୱାଧୀନ ଭାରତକୁ ଚଳେଇବାକୁ ତିଆରି ହୋଇଗଲା । ଏଥିପାଇଁ ଡ. ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ ଏକ ସମିତି ଗଢ଼ାଗଲା । ଏଇ ସମିତିକୁ କୁହାଗଲା କନିଷ୍ଟିଚ୍ୟୁଏଟ୍ ଆସେମ୍ବ୍ଲି ।

ଏଇ ସମିତିରେ କଂଗ୍ରେସର ତଥା ଦେଶର ବଡ଼ ବଡ଼ ନେତା ସଭ୍ୟ ରହିଲେ । ଜଓ୍ୱାହରଲାଲ ନେହରୁ, ସି. ରାଜଗୋପାଲାଚାରୀ, ସର୍ଦାର ବଲ୍ଲବଭାଇ ପଟେଲ, ଡ.ରାଜେନ୍ଦ୍ର ପ୍ରସାଦ, ମୌଲାନା ଆଜାଦ୍, ଶ୍ୟାମାପ୍ରସାଦ ମୁଖାର୍ଜୀ, ନଳିନୀ ରଞ୍ଜନ ଘୋଷ ପ୍ରମୁଖ ଏ ସମିତିରେ ଥିଲେ ମୁଖ୍ୟ । ଜନଜାତିର ପ୍ରତିନିଧି ଥିଲେ ତିରିଶ ଜଣ । ଫ୍ରାନ୍‌କ ଆଂଥୋନି, ଏଚ୍.ପି. ମୋଦି, ହରେନ୍ଦ୍ର କୁମାର ମୁଖାର୍ଜୀ ଯଥାକ୍ରମେ ଆଂଲୋଇଣ୍ଡିଆନ୍, ପାର୍ସି ଓ ଖ୍ରୀଷ୍ଟିଆନ୍ ସଂପ୍ରଦାୟର ସଭ୍ୟ ଥିଲେ । ଆଲ୍ଲାଦି କୃଷ୍ଣସ୍ୱାମୀ ଆୟାର, ବି.ଏନ୍. ରାଉ, କେ.ଏମ୍. ମୁନ୍‌ସି, ଗଣେଶ ମାଓ୍ୱଲଂକର ଜୁରି ଏବଂ ଦୁର୍ଗାବାଇ ଦେଶମୁଖ, ସରୋଜିନୀ ନାଇଡୁ, ହଂସ ମେହେତା, ରାଜକୁମାରୀ ଅମୃତ କାଉର ଥିଲେ ମହିଳା ପ୍ରତିନିଧି । ପ୍ରାୟ ତିନିଶ ସଭ୍ୟଙ୍କୁ ନେଇ ଏ ମହାସମିତି ଗଠିତ ହେଲା, ଯାହାର ମୁଖ୍ୟ ରହିଲେ ଡ. ଭୀମରାଓ ରାମଜୀ ଆମ୍ବେଦକର । ଆଉ ତାଙ୍କରି ନେତୃତ୍ୱରେ ପ୍ରସ୍ତୁତ ସମ୍ବିଧାନର ପାଣ୍ଡୁଲିପିର ଆଲୋଚନା ଚାଲିଲା । ବହୁ ଖଣ୍ଡନ, ମଣ୍ଡନ ହେଲା । ଦୁଇବର୍ଷ ଏଗାର ମାସ, ଅଠର ଦିନ ଲାଗିଲା ଆଲୋଚନା । ତିନିଶ ଆଠଜଣ ସଭ୍ୟଙ୍କ ସ୍ୱାକ୍ଷରରେ ସମ୍ବିଧାନର ପ୍ରଥମ ପାଣ୍ଡୁଲିପି ଗୃହୀତ ହେଲା । ହାତରେ ଗୋଟିଏ ଇଂରାଜୀ ଓ ଗୋଟିଏ ହିନ୍ଦୀ ପ୍ରତିଲିପି ପ୍ରସ୍ତୁତ ହୋଇଥିଲା ।

ଏ ଭିତରେ ଦେଶରେ ମହା ବିଡ଼ମ୍ବନା ଘଟିଗଲା । ଭାରତ ଦି'ଖଣ୍ଡ ହେଲା, ୧୯୪୭ରେ ଦେଶ ସ୍ୱାଧୀନ

ହେଲା । ଭାରତ ଓ ପାକିସ୍ତାନ ସୃଷ୍ଟି ହେଲା । କନ୍‌ଷ୍ଟିଚ୍ୟୁଏଟ୍ ଆସେମ୍ବ୍ଲିରେ କେତେ ସଭ୍ୟ ପାକିସ୍ଥାନ ଚାଲିଗଲେ । କେତେକଙ୍କ ଦେହାନ୍ତ ହେଲା; ମାତ୍ର ଆସେମ୍ବ୍ଲି କାମ ଚାଲୁ ରହି ସମ୍ବିଧାନର ପ୍ରସ୍ତୁତି ଶେଷ ହୋଇଗଲା ଏବଂ ୧୯୫୦ ଜାନୁଆରୀ ୨୪ ତାରିଖରେ ଏହା ଗୃହୀତ ହେଲା । ମାତ୍ର ଦୁଇ ଦିନ ପରେ ଅର୍ଥାତ୍ ଜାନୁଆରୀ ୨୬ ତାରିଖରେ ଏହି ନିୟମ ବା ପ୍ରଶାସନିକ ବିଧାନରେ ପରିଣତ ହେଲା ।

ସମ୍ବିଧାନ ଆମ ଦେଶକୁ ଏକ ଗଣତନ୍ତ୍ର ଶାସନ ଦେଇଛି । ଭାରତକୁ ଏକ ସାର୍ବଭୌମ ରାଷ୍ଟ୍ରରେ ପରିଣତ କରୁଛି । ନାଗରିକମାନଙ୍କୁ ନ୍ୟାୟ, ସମାନତା, ସ୍ୱାଧୀନତା, ଭ୍ରାତୃତ୍ୱ, ସଂହତି, ଧର୍ମନିରପେକ୍ଷତା, ସମାଜବାଦର ପ୍ରତିଶ୍ରୁତି ଦେଇଛି । ନାଗରିକର ଅଧିକାର ଦେଇ ଭାରତୀୟଙ୍କ ସ୍ୱାର୍ଥକୁ ସୁରକ୍ଷା ଦେଇଛି ।

ଭାରତ ଏକ ବହୁଭାଷା ଓ ଉପଭାଷାର ଭୂଇଁ । ଏଠି ଗୁଡ଼ିଏ ଧର୍ମ, ଅନେକ ଜାତି ଓ ସଂପ୍ରଦାୟ । ବହୁ ସଂସ୍କୃତିର ମିଳନ ଘଟିଛି ଏଠି । ଏ ସମସ୍ତ ଦିଗକୁ ଆଖିରେ ରଖି ବିଧାନ ପ୍ରଣୟନ ଏକ ଗହନ କଥା ।

ଗୃହୀତ ସମ୍ବିଧାନ ପାଣ୍ଡୁଲିପିରେ ରାଷ୍ଟ୍ରନାୟକ ଜୱାହରଲାଲ ପ୍ରଥମେ ସ୍ୱାକ୍ଷର କରିଥିଲେ । ତାହାଙ୍କ ପରେ ଡ. ରାଜେନ୍ଦ୍ର ପ୍ରସାଦ । ଶେଷରେ ଦସ୍ତଖତ କରିଥିଲେ ଫିରୋଜ୍ ଗାନ୍ଧୀ । ସମୁଦାୟ ୨୮୪ଟି ସ୍ୱାକ୍ଷର ରହିଛି ପାଣ୍ଡୁଲିପି ଦୁଇଟିରେ, ଯାହାକି ପ୍ରଥମ ପାଣ୍ଡୁଲିପିର ସଂଶୋଧିତ ରୂପ ।

ଏହା ପୃଥିବୀର ବୃହତ୍ତମ ଲିଖିତ ସମ୍ବିଧାନ । ବହୁ ବିବିଧତାକୁ ସନ୍ତୁଷ୍ଟ କରି ରଚିତ ଆମ ସମ୍ବିଧାନ ପୃଥିବୀର ଏକ ବିସ୍ମୟ । ଆନନ୍ଦର କଥା, ୧୯୫୦ରୁ ଏ ଯାବତ୍ ଏ ପବିତ୍ର ଜାତୀୟ ମହାଗ୍ରନ୍ଥ ଆମ ଦେଶକୁ ଶାନ୍ତି ଓ ଶୃଙ୍ଖଳାର ସହ ଚଳାଇ ଆସିଛି । ଏହାର ଆମୁଖ ବା ପ୍ରିଏଁବିଲ୍‌ଟି ଅତ୍ୟନ୍ତ ମୂଲ୍ୟବାନ୍ । ବାଇଶି ଖଣ୍ଡରେ ବିଭକ୍ତ ଏ ମହାଗ୍ରନ୍ଥରେ ୩୯୫ଟି ଆର୍ଟିକ୍ଲ, ୧୨ ସିଡ୍ୟୁଲ ରହିଚି । ଏ ପର୍ଯ୍ୟନ୍ତ ଗୃହୀତ ୯୮ଟି ସଂଶୋଧନ ଏଥିରେ ସଂଯୋଜନ କରାଯାଇଛି । ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ ଶ୍ୟାମ ବେନିଗାଲ୍ ଦଶଟି ଏପିସଡ଼ର ଯେଉଁ ଗୁରୁତ୍ୱପୂର୍ଣ୍ଣ ବୃତ୍ତଚିତ୍ର ତିଆରିଛନ୍ତି, ରାଜ୍ୟସଭା ଟିଭିରେ ତାହା ସମ୍ବିଧାନ ନାଁ'ରେ ପ୍ରସାରିତ ହେଉଛି । ୨୦୧୪ ମାର୍ଚ୍ଚରୁ ପ୍ରତି ରବିବାର ଦଶଟାରେ ଏହା ପ୍ରସାରିତ ହୋଇଥାଏ ।

ସମ୍ବିଧାନ ଆମ ଜାତିର ଗର୍ବ ଓ ଗୌରବ । ଏହାର ମର୍ଯ୍ୟାଦା ରକ୍ଷା କରିବା ଆମର ପବିତ୍ର କର୍ତ୍ତବ୍ୟ । ପରିତାପର କଥା, କେତେକ ମନ୍ଦ ଲୋକ ଓ ରାଜନୀତିକ ଦଳ ଏହାର ଖିଲାପ କରିବା ପାଇଁ ଚେଷ୍ଟା କରୁଛନ୍ତି । ଭାରତର ସଚେତନ ନାଗରିକମାନେ ଏ ପବିତ୍ର ଜାତୀୟ ମହାଗ୍ରନ୍ଥର ମର୍ଯ୍ୟାଦା ରକ୍ଷା କରିବାକୁ ଚିର ତତ୍ପର ରହିବା ଉଚିତ ।

*୨୦୬, ହନୀ ଅର୍ଚ୍ଚନା କଂପ୍ଲେକ୍ସ, ବ୍ଲକ୍-୨, ଉଁଟଖାନା, ନାଗପୁର - ୪୪୦୦୦୯, ମହାରାଷ୍ଟ୍ର*

✲✲

କିଛି ଦିନ ତଳେ ବିଜେପି ନେତ୍ରୀ ଶ୍ରୀମତୀ ସ୍ୱରାଜ ଦାବି କରୁଥିଲେ ଯେ, ଶ୍ରୀମଦ୍ ଭାଗବତ ଗୀତାକୁ ଭାରତର ଜାତୀୟ ଗ୍ରନ୍ଥ କରାଯାଉ । ସେ ଭୁଲିଯାଇଥିଲେ ଯେ ସମ୍ବିଧାନ ଭାରତର ଜାତୀୟ ଗ୍ରନ୍ଥର ମର୍ଯ୍ୟାଦା ପାଇସାରିଛି । ଏହା ଭାରତକୁ ଏକ ସାର୍ବଭୌମ, ଗଣତାନ୍ତ୍ରିକ ୟୁନିଅନ୍‌ରେ ପରିଣତ କଲା । ପୃଥିବୀର ସର୍ବବୃହତ୍ ଲିଖିତ ଏ ସମ୍ବିଧାନ ୧,୧୭, ୩୬୯ଟି ଇଂରାଜୀ ଶବ୍ଦରେ ରଚିତ ହୋଇଛି ।

ଡ. ଶୁଭେନ୍ଦ୍ର ମୋହନ ଶ୍ରୀଚଂଦନ ସିଂହ

# ଡେରି ହୋଇଗଲା

ଶ୍ରୀ ତନ୍ମୟ ମିଶ୍ର



–ଟିକୁନୁ ! ଏ ଟିକୁନୁ ! ଆରେ ଉଠୁନୁ କାହିଁକି ସକାଳ ହେଲାଣି । ଆଜିପରା କ'ଣ କାମ ଅଛି କହୁଥିଲୁ, ସଅଳ ଡାକିଦେବା ପାଇଁ । ଟିକୁନୁର ମାଆ ଟିକୁନୁକୁ ଡାକି କହିଲେ ।

ଟିକୁନୁ କିନ୍ତୁ ହୁଁ-ହାଁ ମାରି ଆଉଟିକେ ଶୋଇପଡୁଥାଏ । ଏମିତି ଅଳସୁଆ ହୋଇ ଉଠୁ ଉଠୁ କିଛି ସମୟ ଚାଲିଗଲା । ତରବରରେ ବିଛଣା ଛାଡ଼ି ଦେଖିଲାବେଳକୁ ସମୟ ସକାଳ ସାତଟା । ଓଃ ବହୁତ ଡେରି ହୋଇଗଲା ! ଆଠଟାବେଳେ ପହଞ୍ଚି ହେବ କି ନାହିଁ । ଏହା ଭାବି ଟିକୁନୁ ସବୁ କାମ ତରବରରେ ସାରିବାକୁ ଲାଗିଲା ।

ମା' ଖାଇବାକୁ ଡାକିଲାବେଳକୁ ଟିକୁନୁ କହିଲା, "ନା...ମା ! ମୁଁ ବାଟରେ ଖାଇନେବି । ଆଜି ଆଠଟାବେଳେ ସ୍କୁଲର ଏକ ବିଜ୍ଞାନ ମେଳାରେ ଯୋଗଦେବାର ଅଛି । ନଚେତ୍ ନମ୍ବର ମିଳିବନି । ଟିକିଏ ଡେରି ହୋଇଗଲେ ଆଉ ଭିତରକୁ ଛାଡ଼ିବେନି ।"

ମା' ଟିକୁନୁର ଏକଥା ଶୁଣି ବଡ଼ ବିରକ୍ତ ହେଲେ କହିଲେ, "ମୁଁ ସେତେବେଳଠୁ ଡାକୁଛି । ତୁ ନ ଉଠି ଶୋଇପଡୁଛୁ । କହୁଛୁ କ'ଣ ନା ଡେରିହେଲାଣି । ହେଉ, ତୋ ଇଚ୍ଛା ! ପଇସା ନେଇ ଯା, ଭୋକ କଲେ ଦୋକାନରୁ ଖାଇନେବୁ ।"

ଟିକୁନୁ ବ୍ୟସ୍ତ ହୋଇ ସାଇକେଲ୍ ଧରି ସ୍କୁଲକୁ ବାହାରିପଡ଼ିଲା । ସମୟ ବଞ୍ଚାଇବା ପାଇଁ ଖୁବ୍ ଜୋର୍‌ରେ ସାଇକେଲ ଚଳାଇବାକୁ ଲାଗିଲା । ଅନ୍ୟମନସ୍କ ତଥା ବ୍ୟସ୍ତତା ଯୋଗୁ ଚଳାଉଥିବାରୁ ରାସ୍ତାରେ ଥିବା ଏକ ହମ୍ପସ୍‌ରେ ବାଡ଼େଇହୋଇ ସାଇକେଲ ରିମ୍‌ଟି ବଙ୍କା ହୋଇଗଲା । ଆଉ ଦୋକାନରେ ଖାଇବ କ'ଣ, ସାଇକେଲ ମରାମତି କରିବାରେ ପଇସାତକ ଖର୍ଚ୍ଚ ହୋଇଗଲା । ଉପାସରେ ଯାଇ ସ୍କୁଲରେ ପହଞ୍ଚିଲା । ସେତେବେଳକୁ ମେଳା ଆରମ୍ଭ ହୋଇସାରିଥାଏ ।

ଟିକୁନୁକୁ ଖାଇବା ପାଇଁ ଆଉ ସୁଯୋଗ ଜୁଟିଲାନି । ଏଣେ ବିଳମ୍ବରେ ଆସିଥିବାରୁ ଶିକ୍ଷକ ବିରକ୍ତ । ଧୀରେ ଧୀରେ ଭୋକ ବଢ଼ି ପେଟରେ ଗ୍ୟାସ୍ ହୋଇଗଲା ଓ ଦେହ ଅସୁସ୍ଥ ହେବାକୁ ଲାଗିଲା । କାମରେ ତା'ର ମନ ଲାଗିଲାନି । ଶିକ୍ଷକ ଏହା ଦେଖି ଟିକୁନୁକୁ ମେଳା ଛାଡ଼ି ବିଶ୍ରାମ ନେବାକୁ କହିଲେ । ମେଳା ବାବଦରେ ଟିକୁନୁକୁ ଆଉ ନମ୍ବର ମିଳିଲାନି ।

ଟିକୁନୁ ସ୍କୁଲ ବେଞ୍ଚ୍ ଉପରେ ଶୋଇ ଖାଲି ଭାବିବାକୁ ଲାଗିଲା– ଆଜି କାହିଁକି ତା'ର ଡେରି ହୋଇଗଲା ଆଉ କ'ଣ ପାଇଁ ଦେହ ତା'ର ଖରାପ ହେଲା..... ।

*ଗୀରିୟା, ରାଜକନିକା-୭୫୪୨୨୦*

✵✵



# ଗଧ ବିଚାରକ

ଶ୍ରୀ ପ୍ରମୋଦ ଚନ୍ଦ୍ର ପଟ୍ଟନାୟକ

ଅଜବ ଏ ଅତୀତର କଥା ଏକ
କୋଇଲିର ଗଧ ହେଲା ବିଚାରକ ।୧।
ଯାଉଥିଲା ଗଧ ଦିନେ ବାଟେବାଟେ
ଦେଖାହେଲା ଗଛ ଡାଳେ କୋଇଲିଟେ ।୨।
ପଚାରିଲା କୋଇଲିକୁ ସେଇ ଗଧ
'କରୁ କିବା ଗୀତେ ତୋର ମନବୋଧ ।୩।
ଶୁଣିବି ମୁଁ ନିଜ କାନେ ତୋର ଗୀତ
ବିଚାରିବି ତେବେ ଯାଇ କେତେ ସତ' ।୪।
କୋଇଲିଟି ଗଧ କଥା ମାନି ଯାଇ
'କୁହୁକୁହୁ' ମିଠା ଗୀତ ଗଲା ଗାଇ ।୫।
ଗାଇ ଗଲା ଏକାଥରେ କେତେ ଗୀତ
ବାଃ ବାଃ କଲେ ଶୁଣୁଥିବା ସମବେତ ।୬।
କି ମନ୍ତର କଲା ଗୀତ ପବନକୁ
ରହିଗଲା ତତ୍‌କ୍ଷଣ ଶୁଣିବାକୁ ।୭।
ଗୀତ ଶୁଣି ତଟିନୀର ଜଳଧାର
ଭୁଲିଗଲା ନୀଚଗାମୀ ଗୁଣ ତା'ର ।୮।
ପଡ଼ିଆରେ ଗୋରୁଗୋଠ ଚରୁଥିଲେ
ଚରା ଛାଡ଼ି ମୁଣ୍ଡ ଟେକି ଶୁଣୁଥିଲେ ।୯।
ଶୂକରଟେ ମାଟି ତାଡ଼ି ଖାଉଥିଲା
ଗୀତ ଶୁଣି ଖାଇବାଟା ଭୁଲିଗଲା ।୧୦।
କି କିମିଆ ଗୀତ କଲା କୋଇଲିର
ସାଧୁ ସାଧୁ ଶୁଭୁଥିଲା ବାରମ୍ବାର ।୧୧।
ମାତର ସେ ଗୀତ ଶୁଣି କୋଇଲିର
ଲାଗିଲାନି ଗଧଟାକୁ ସୁମଧୁର ।୧୨।
ବୋବାଳିଲା ହେରେସାମି ସ୍ୱର ତା'ର
କହିଲା କି ଏହା ସିନା ମିଠା ସ୍ୱର ।୧୩।
ସେହିଦିନୁ କୁହୁ କୁହୁ ନ ଶୁଭିଲା
ଅପମାନେ କୋଇଲିଟା ଲୁଚିଗଲା ।୧୪।
ଗଧଟାକୁ କିଏ କଲା ବିଚାରକ
ଛିଛା କଲେ ଶୁଣୁଥିବା ସବୁଯାକ ।୧୫।

*ଉଦୟପୁର, ବେରବୋଇ, ପୁରୀ*

❋❋



- ସକାଳୁ ଉଠି ୧ ଗ୍ଲାସ୍ ପାଣି ପିଇଲେ ଆମର ଶରୀର ସୁସ୍ଥ ରହେ ।
- ଖାଇବା ପୂର୍ବରୁ ୧ ଗ୍ଲାସ୍ ପାଣି ପିଇଲେ ଖାଦ୍ୟ ହଜମରେ ଏହା ସାହାଯ୍ୟ କରିଥାଏ ।
- ଗାଧୋଇବା ପୂର୍ବରୁ ୧ ଗ୍ଲାସ୍ ପାଣି ପିଇଲେ ଏହା ରକ୍ତଚାପକୁ ନିୟନ୍ତ୍ରଣରେ ରଖେ ଏବଂ
- ଶୋଇବା ପୂର୍ବରୁ ୧ ଗ୍ଲାସ୍ ପାଣି ପିଇଲେ ହୃଦ୍‌ରୋଗରୁ ରକ୍ଷା ମିଳେ ।

# ଜୟ ବିଜ୍ଞାନର ଜୟ (୧)

ଶ୍ରୀ ଉମାକାନ୍ତ ମହାନ୍ତି

ସଂଗ୍ରହାଳୟ ବା ମ୍ୟୁଜିୟମଗୁଡ଼ିକ ଜ୍ଞାନର ଗନ୍ତାଘର । ମାନବ ଜାତିର ସୃଷ୍ଟିଠାରୁ ଏ ଯାବତ୍ ମାନବ କେଉଁ କେଉଁ କ୍ଷେତ୍ରରେ କି କି ପ୍ରକାର ପ୍ରଗତି ହାସଲ କରିଛି, ସେସବୁର ଏକ ମୋଟାମୋଟି ଚିତ୍ର ସଂଗ୍ରହାଳୟଗୁଡ଼ିକରୁ ଦେଖିବାକୁ ମିଳିଥାଏ । ପ୍ରତ୍ୟେକ ଉନ୍ନତ ରାଷ୍ଟ୍ର ନିଜ ନିଜ ରାଷ୍ଟ୍ରର ପ୍ରଗତିର ଚିତ୍ର ଅନ୍ୟ ଦେଶର ପର୍ଯ୍ୟଟକମାନଙ୍କ ଆଗରେ ସଜାଡ଼ି ଥୋଇବା ପାଇଁ ସଂଗ୍ରହାଳୟ ପ୍ରତିଷ୍ଠା କରିଥାଆନ୍ତି । ଏଗୁଡ଼ିକ ସେ ଦେଶରେ ଘଟୁଥିବା ପ୍ରଗତିର ଏକ ଏକ ପ୍ରଜ୍ଞାପନ ମେଢ଼ ଭଳି କାର୍ଯ୍ୟ କରିଥାଆନ୍ତି ।

ବହୁ ଉଚ୍ଚକୋଟୀର ବିଶ୍ୱସ୍ତରୀୟ ସଂଗ୍ରହାଳୟ ଦେଶସାରା ଖେଳାଇ ହୋଇ ରହିଛି । ସେଥିମଧ୍ୟରୁ ଆମେରିକାର ବିଶ୍ୱପ୍ରସିଦ୍ଧ 'ଏୟାର ଆଣ୍ଡ୍ ସ୍ପେସ୍' (Air & Space) ସଂଗ୍ରହାଳୟଟି ଅନ୍ୟତମ । ମହାକାଶ ବା ମହାଶୂନ୍ୟକୁ ଜୟ କରିବାକୁ ବିଭିନ୍ନ ସମୟରେ ମାନବଜାତି କରି ଆସିଥିବା ପ୍ରଚେଷ୍ଟାର ଏକ ଧାରାବାହିକ ଇତିହାସ ଏହି ସଂଗ୍ରହାଳୟଟିରୁ ଦେଖିବାକୁ ମିଳିଥାଏ । ଏଥିସହିତ ଯୋଡ଼ା ହୋଇ ରହିଛି କେତେ ହସ, କାନ୍ଦ, ଜୟ, ପରାଜୟ, ଘଟଣା, ଦୁର୍ଘଟଣାର ରହସ୍ୟ-- ରୋମାଞ୍ଚଭରା ଅଙ୍ଗେଲିଭା କାହାଣୀମାଳା । ଏହି ସଂଗ୍ରହାଳୟଟି ୱାସିଙ୍ଗଟନ୍ ଡି.ସିର କେନ୍ଦ୍ରସ୍ଥଳରେ ଥିବା 'ସ୍ମିଥ୍ ସୋନିୟନ ଛକ' ଠାରେ ଗଢ଼ିଉଠିଛି ।

ବୈଜ୍ଞାନିକ ସ୍ମିଥ୍ ସୋନିୟନଙ୍କର ପ୍ରଥମ ଆର୍ଥିକ ଅନୁଦାନରେ ଏହିପରି ବିଭିନ୍ନ ବିଷୟବସ୍ତୁ ଉପରେ ଏଠାରେ ଅନ୍ୟୁନ ଛୋଟବଡ଼ ୧୭ଟି ସଂଗ୍ରହାଳୟ ଅଛି । ଏଗୁଡ଼ିକ ଏବେ ବିଶ୍ୱର ଅମୂଲ୍ୟ ଜନଶିକ୍ଷାକେନ୍ଦ୍ର ହିସାବରେ ବିବେଚିତ ହୋଇଆସୁଛି । ପ୍ରତ୍ୟହ ସାରା ବିଶ୍ୱରୁ ଆସୁଥିବା ପର୍ଯ୍ୟଟକମାନେ ଏଗୁଡ଼ିକ ପରିଦର୍ଶନ କରିବା ସହିତ ଅନେକ ଅଜ୍ଞାତ ବିଷୟବସ୍ତୁ ସମ୍ବନ୍ଧରେ ଜାଣିବାର ସୁଯୋଗ ପାଇପାରୁଛନ୍ତି ।

ସ୍ମିଥ୍ ସୋନିୟନ ଜଣେ ବ୍ରିଟିଶ ବୈଜ୍ଞାନିକ ଥିଲେ । ଜୀବନସାରା ସେ ରସାୟନ-ପଦାର୍ଥ ବିଦ୍ୟା ଏବଂ ଭୂବିଜ୍ଞାନ (Geology) ଅଧ୍ୟୟନ ତଥା ଅଧ୍ୟାପନା କରି ଆସିଥିଲେ । ମୃତ୍ୟୁବେଳକୁ ତାଙ୍କ ନିକଟରେ ୧୫ ମିଲିୟନ୍ ଆମେରିକୀୟ ଡଲାର୍ ଗଚ୍ଛିତ ଥିଲା । ସେ ତାଙ୍କର ସଞ୍ଚିତ ରାଶି ତାଙ୍କର ପଟ୍ଟଶିଷ୍ୟ ବୈଜ୍ଞାନିକ ଆଲେକଜାଣ୍ଡାର ଗ୍ରାହାମବେଲ୍ (ଟେଲିଫୋନର ଉଦ୍ଭାବକ)ଙ୍କ ଜିମାରେ ଦେଇ ଯାଇଥିଲେ । ତାଙ୍କର ଇଚ୍ଛା ଥିଲା ଏହି ଧନରାଶିରେ ଏପରି କିଛି ଅନୁଷ୍ଠାନ ଗଢ଼ିଉଠୁ, ଯେଉଁଠାରୁ ଜନସାଧାରଣ ଭରପୂର ଆନନ୍ଦ ଉଠାଇବା ସହିତ ବିଭିନ୍ନ ବିଷୟରେ ଶିକ୍ଷାଲାଭ କରି ନିଜନିଜର ଜ୍ଞାନର ପରିସର ବୃଦ୍ଧି କରିପାରିବେ ।

ତାଙ୍କ ମୃତ୍ୟୁପରେ ବୈଜ୍ଞାନିକ ଆଲେକଜାଣ୍ଡାର ଗ୍ରାହାମବେଲ ଆମେରକା ଆସି ଆମେରିକା ସରକାରଙ୍କ ସାହାଯ୍ୟରେ ଏକ ଅନୁଷ୍ଠାନ ଗଢ଼ିଲେ । ଏହି ଅନୁଷ୍ଠାନଟିର କଳେବର ବୃଦ୍ଧି ପାଇ ଏବେ କେବଳ ୱାଶିଂଟନ ନଗରୀରେ ୧୭ଟି ପର୍ଯ୍ୟନ୍ତ ମ୍ୟୁଜିୟମ ପରିଚାଳିତ ହେଉଛି ।

ଏକ ଛୁଟିଦିନ ଦେଖି ଆମେ ରହୁଥିବା ଭର୍ଜିନିଆ ପ୍ରଦେଶରେ ରୋନକ୍ ସିଟିରୁ ଆମ ଗାଡ଼ିରେ ବାହାରିଲୁ । ପ୍ରାୟ ୪୦୦ କିଲୋମିଟର ପାଖାପାଖି ବାଟ । ତେବେ ଆମେ ଦିନ ଦଶଟା ସୁଦ୍ଧା ୱାଶିଂଟନ୍ ସହରରେ ପହଞ୍ଚିଗଲୁ । ଏକ ଘରୋଇ ଗାଡ଼ି ରଖିବା ଜାଗାରେ ଗାଡ଼ି

ରଖିଦେଇ ଆମେ ସଂଗ୍ରହାଳୟ ଉଦ୍ଦେଶ୍ୟରେ ମେଟ୍ରୋଟ୍ରେନ୍ ଧରିଲୁ । ପ୍ରକାଶ ଥାଉକି ଏଠାରେ ମୁକ୍ତ ରଖିବା ଜାଗା ବହୁ ସୀମିତ । ସେଥିପାଇଁ କିଛି ବ୍ୟକ୍ତିବିଶେଷ ନିଜେ ବଡ଼ ବଡ଼ କୋଠା ତିଆରି କରି ତା' ଭିତରେ ଗାଡ଼ି ରଖିବାର ସୁବିଧା ଦେଇଥାଆନ୍ତି । ଅବଶ୍ୟ ସେଥିପାଇଁ କିଛି ପଇସା ଦେବାକୁ ହୋଇଥାଏ ।

ଆମେ ଲା-ଏନ୍‌ଫାଣ୍ଟା ପ୍ଲାଜା ଷ୍ଟେସନ୍‌ରେ ମେଟ୍ରୋ ଟ୍ରେନ୍‌ରୁ ଓହ୍ଲାଇପଡ଼ି ସଂଗ୍ରହାଳୟରେ ପ୍ରବେଶ କଲୁ । ଏକ ବିଶାଳ ୪ ମହଲା କୋଠାରେ ୧୬୧,୧୪୫ ବର୍ଗଫୁଟ୍ ଜାଗା ମାଡ଼ି ବସିଥିବା ସଂଗ୍ରହାଳୟଟି ୧୯୪୬ରୁ ସର୍ବସାଧାରଣଙ୍କ ପାଇଁ ଖୋଲି ଦିଆଯାଇଛି । ପ୍ରବେଶପଥରେ ରହିଛି ରକେଟ୍ ପରି ଦେଖାଯାଉଥିବା ଏକ କଳାକୃତି ଏବଂ ସେଠାରେ ଲେଖାଯାଇଛି AD Astra ଅର୍ଥାତ୍ ତାରକାମଣ୍ଡଳ ଦିଗରେ (Towards Stars) । ପ୍ରତୀକଟିରୁ ହିଁ ସଂଗ୍ରହାଳୟର ମୁଖ୍ୟ ବିଷୟବସ୍ତୁ ବୁଝାପଡ଼ିଥାଏ ।

ସମୟ ଆଗେଇବା ସହିତ ଆକାଶରେ ଉଡ଼ିବା ଏବଂ ମହାକାଶକୁ ଜୟ କରିବା ପାଇଁ ଯେଉଁସବୁ ପ୍ରଚେଷ୍ଟା କରାଯାଇଛି ଏବଂ ସେଥିପାଇଁ ଯେଉଁସବୁ ଉଡ଼ାଜାହାଜ ବା ମହାକାଶଯାନ ବ୍ୟବହୃତ ହୋଇଛି, ସେଗୁଡ଼ିକ ଏଠାରେ ଅବିକଳ ଭାବରେ ଦେଖିବାକୁ ମିଳିଥାଏ ।



ଅବଶ୍ୟ ଅତ୍ୟଧିକ ବୃହତ୍ କଳେବର ଥିବା ଜେଟ୍‌ବିମାନର କିଛି କିଛି ମୁଖ୍ୟାଂଶ ମାତ୍ର ରଖାଯାଇଛି ।

ଆକାଶରେ ଚଢ଼େଇ ଭଳି ଉଡ଼ିବୁଲିବାର ଚିନ୍ତାଧାରା ପ୍ରଥମେ ଦୁଇଟି ବାଳକଙ୍କ ମୁଣ୍ଡରେ ପଶିଥିଲା– ଜଣଙ୍କର ବୟସ ଥିଲା ୧୨ ବର୍ଷ ଏବଂ ଅନ୍ୟଜଣଙ୍କର ବୟସ ଥିଲା ମାତ୍ର ୮ । ବାଳକଦୁଇଟି ଥିଲେ ଦୁଇଭାଇ– ପରେ ସାରାଜଗତ ଉଡ଼ାଜାହାଜର ଉଦ୍ଭାବକ 'ରାଇଟ୍ ଭ୍ରାତାଦ୍ୱୟ' ବୋଲି ଏମାନଙ୍କ ବିଷୟରେ ଜାଣିବାକୁ ପାଇଲେ । ପିତା ତାଙ୍କର ଥିଲେ ମିଲ୍‌ଟନ୍ ରାଇଟ୍ । ବୃତ୍ତିରେ ସେ ଥିଲେ ଜଣେ ଖ୍ରୀଷ୍ଟୀୟ ଧର୍ମଯାଜକ ।

ଥରେ ମିଲ୍ଟନ୍ ଧର୍ମୀୟ କାର୍ଯ୍ୟରେ ସେ ଫ୍ରାନସ୍ ଯାଇଥିଲେ । ଫେରିବାବେଳକୁ ପିଲାମାନଙ୍କ ପାଇଁ ଏକ ଖେଳନା ହେଲିକପ୍ଟର ଫ୍ରାନସ୍‌ରୁ ଆଣିଥିଲେ । ହେଲିକପ୍ଟରଟି କାର୍ଡବୋର୍ଡ଼-ଅଠା-ଆଲୁମିନିୟମ୍-ପାତ-କର୍କ ସାହାଯ୍ୟରେ ତିଆରି ହୋଇଥିଲା । ହାତରେ ଧରି ଘୂରାଇବା ପାଇଁ ଏଥିରେ ଗୋଟିଏ ରବରବ୍ୟାଣ୍ଡ୍ ଲାଗିଥିଲା । ଖେଳନାଟି ଫ୍ରାନସ୍‌ର ଜଣେ ମହାକାଶବିଜ୍ଞାନୀଙ୍କ ତତ୍ତ୍ୱକୁ ଭିତ୍ତିକରି ତିଆରି ହୋଇଥିଲା ।

ବାରମ୍ବାର ସେଇଟିକୁ ଦି'ଭାଇ ଟଣାଘୋଷଡ଼ା କରିବା ଫଳରେ ଦିନେ ସେଇଟି ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । ସେମାନେ କିନ୍ତୁ ସେଥିରେ ଦବି ଗଲେନାହିଁ । ଖେଳନାଟିର ନିର୍ମାଣ କୌଶଳ ଭଲ ଭାବେ ଅନୁଧ୍ୟାନ କରି ଅବିକଳ ସେହିଭଳି ଆଉ ଗୋଟିଏ ଖେଳନା ତିଆରି କରିଦେଲେ ।

ପରେ ପରେ ଏମାନେ ଆକାଶରେ ଉଡ଼ାଇବା ପାଇଁ ଚାରିପଟ ନିବୁଜ୍ ଥିବା ବଡ଼ ବଡ଼ ଗୁଡ଼ି ତିଆରି କରି ଉଡ଼ାଇ ଚାଲିଲେ । ଆକାଶଛତା ପରି ଗ୍ଲାଇଡର ସାହାଯ୍ୟରେ ମଧ୍ୟ ଉଚ୍ଚ ଜାଗାରୁ ତଳକୁ ଉଡ଼ିଆସିବା ପାଇଁ

ଚେଷ୍ଟା କଲେ । ଆକାଶରେ କିଛି ବାଟ ଉଡ଼ି ଆସି ତଳେ ନିରାପଦରେ ଓହ୍ଲାଇ ପାରିଲେ । ଏହାଦ୍ୱାରା ଆକାଶରେ ଉଡ଼ିବୁଲିବାର କିଛି କିଛି ଅଭିଜ୍ଞତା ଲାଭ ହେଲା; ହେଲେ କୌଣସିଟିରେ ତାଙ୍କର ମନ ବୁଝିଲା ନାହିଁ ।

ଶେଷରେ ଏକ ଛୋଟ ସ୍ୱୟଂଚାଳିତ ଇଞ୍ଜିନ୍ ତିଆରି କରି ପକାଇଲେ । ଏଥିରେ ତାଙ୍କର ସାଇକେଲ୍ ତିଆରି ଫ୍ୟାକଟ୍ରିର ମେକାନିକ୍ ଚାର୍ଲି ଟେଲର୍ ତାଙ୍କ ବୈଷୟିକ ଅଭିଜ୍ଞତା ମଧ୍ୟ ଲଗାଇଥିଲେ । ଏଥିରେ ଚଢ଼େଇମାନଙ୍କ ଭଳି ବଡ଼ ବଡ଼ ଡେଣା ଖଞ୍ଜା ଥିଲା । ଉଇଲ୍‌ବର୍ ଏଥିରେ ବସି ଉଡ଼ିବାର ଚେଷ୍ଟା କଲେ । ଗୁଡ଼ି ହେଉ କି ଗ୍ଲାଇଡର ହେଉ ବା ବର୍ତ୍ତମାନ ତିଆରି ହୋଇଥିବା ଛୋଟ ଇଞ୍ଜିନ୍‌ଚାଳିତ ଉଡ଼ାଜାହାଜ ହେଉ, ଏଗୁଡ଼ିକ ବାୟୁର ଗତି ଉପରେ ନିର୍ଭର କରୁଥିଲା । ଏଥିରେ ପାଇଲଟ୍ ବା ଆରୋହୀର କୌଣସି ଭୂମିକା ନ ଥିଲା ।

ଶେଷରେ ବାୟୁର ଗତିକୁ ପ୍ରତିହତ କରି ପାଇଲଟ୍‌ଦ୍ୱାରା ନିୟନ୍ତ୍ରିତ ହୋଇପାରୁଥିବା ଯାନ ଉପରେ ଗବେଷଣା ଆରମ୍ଭ ହେଲା ।

କଥାରେ ଅଛି, 'ଝାଳବୁହା ପରିଶ୍ରମ କେବେ ବି ବିଫଳ ହୋଇ ନ ଥାଏ ।' ଏମାନଙ୍କ ଅଧ୍ୟବସାୟ ଫଳପ୍ରଦ ହେବା ଭଳି ବୋଧ ହେଲା । ଏକ ବଡ଼ ବଡ଼ ଡେଣା ଥିବା ଖୋଲା ଉଡ଼ାଜାହାଜ ଏମାନେ ତିଆରି କରିପକାଇଲେ । ଅବଶ୍ୟ ବର୍ତ୍ତମାନ ଚାରିପଟ ନିବୁଜ୍ ଥିବା, ଶକ୍ତିଶାଳୀ ଇଞ୍ଜିନ୍ ଖଞ୍ଜାଥିବା, ତଳେ ଚକ ଲାଗିଥିବା ଏବଂ ବଡ଼ ବଡ଼ ଡେଣାଯୁକ୍ତ ଉଡ଼ାଜାହାଜ ପରି ଏଇଟି ନ ଥିଲା । ତେବେ ଆଧୁନିକ ଉଡ଼ାଜାହାଜ ନିର୍ମାଣର ଅନ୍ତବହ୍ନୁତ ସମସ୍ତ ତଥ୍ୟ ଏଥିରେ ଖଟାଯାଇଥିଲା । ବାୟୁର ଗତି କାଟି ପାଇଲଟ୍ ତା'ଇଚ୍ଛା ଅନୁସାରେ ଏଇଟିକୁ ଚଳାଇ ପାରୁଥିଲା । ବଡ଼ଭାଇ ଉଇଲବର ରାଇଟ୍ ବାରମ୍ବାର ଏଇଟିକୁ ଚଳାଇ ଏହାର କାର୍ଯ୍ୟକାରିତା ପରୀକ୍ଷା କରି ଚାଲିଲେ । ଶେଷକୁ ମହାପରୀକ୍ଷା ପାଇଁ ପ୍ରସ୍ତୁତ ହୋଇଗଲେ ।

୧୯୦୩ ମସିହା, ଡିସେମ୍ବର ମାସ ୧୭ ତାରିଖରେ ତାଙ୍କ ସଫଳତାର ପରୀକ୍ଷା ଦେଲେ । ସେଦିନ ବହୁ ବିଶିଷ୍ଟ ଦର୍ଶକଙ୍କ ସମ୍ମୁଖରେ ଉଇଲ୍‌ବର୍ ତାଙ୍କଦ୍ୱାରା ନିର୍ମିତ ଉଡ଼ାଜାହାଜଟିକୁ ଖଣ୍ଡେ ଦୂରକୁ ଆକାଶରେ ଉଡ଼ାଇନେଲେ । ତାଳିମାଡ଼ ଓ ଅଜସ୍ର ପ୍ରଶଂସା ତାଙ୍କ ଉପରେ ଅଜାଡ଼ି ହୋଇପଡ଼ିଲା । ସେଦିନର ସେ ଜାଗାଟି ଥିଲା ଉତ୍ତର କାରୋଲିନାର କିଟି ହକ୍ (Kitty Hawk) । ଆଉ ସେହିଦିନଠାରୁ ସମୟ ଓ ଦୂରତାକୁ ଜୟ କରିବା ପାଇଁ ମଣିଷ ଦେଖି ଆସିଥିବା ସ୍ୱପ୍ନ ସାକାର ହେଲା ।

ସମୟ ଓ ଦୂରତାକୁ ଜୟ କରିବା ପାଇଁ ଭବିଷ୍ୟତ ପିଢ଼ି ପାଇଁ ଏକ ସମ୍ଭାବନା ସୃଷ୍ଟି କରିଦେଇ ସେମାନେ ସଂସାରରୁ ବିଦାୟ ନେଲେ ।

ବଡ଼ଭାଇ ଉଇଲ୍‌ବର୍ ମାତ୍ର ୪୫ ବର୍ଷ ବୟସରେ ଟାଇଫଏଡ୍ ରୋଗରେ ଆକ୍ରାନ୍ତ ହୋଇ ୧୯୧୨ ମସିହାରେ, ସାନଭାଇ ଅରଭିଲ୍ ହୃଦ୍‌ଘାତରେ ୭୭ ବର୍ଷ ବୟସରେ ୧୯୪୮ ମସିହାରେ ଏବଂ ସଂସାରରୁ ବିଦାୟ ନେଲେ ।

ଆମେ ଦେଖୁଥିବା ମ୍ୟୁଜିୟମଟିରେ ଏଇ



# ବାରଟି ବଳଦ

ଡକ୍ଟର ଚାଇନା ପ୍ରଧାନ

ଇଟାଲି ଦେଶର କଥା । ଜଣେ ଲୋକର ବାରଟି ପୁଅ ଥିଲେ । ସମୟକ୍ରମେ ସେମାନେ ବଡ଼ ହେଲେ । ବିଭିନ୍ନ କଥାରେ ସେହି ପୁଅମାନେ ବାପା ସହ କଳି କରୁଥିଲେ । ତେଣୁ ପରିବାରରେ ଅଶାନ୍ତି ସୃଷ୍ଟି ହେଉଥିଲା ।

ଦିନେ ପୁଅମାନେ ବାପାଙ୍କୁ ଛାଡ଼ି ଜଙ୍ଗଲ ପଳାଇଲେ । ସେଠାରେ ସେମାନେ ଏକାଠି ଘର ତୋଳି ରହିବାକୁ ଲାଗିଲେ । ଇତ୍ୟବସରରେ ବାପାଙ୍କର ଆଉ ଗୋଟିଏ ଝିଅ ଜନ୍ମ ହେଲା । ସମୟକ୍ରମେ ଝିଅଟି ବଡ଼ ହେବା ସହିତ ବାରଜଣ ଭାଇମାନଙ୍କ ସଂପର୍କରେ ଜାଣିଲା ଯେ ତା'ର ଭାଇମାନେ ବାପାଙ୍କ ସହ କଳି କରି ଘରୁ ପଳାଇ ଜଙ୍ଗଲରେ ରହୁଛନ୍ତି । ତେଣୁ ସେ ଭାଇଙ୍କୁ ଭେଟିବା ପାଇଁ ଭାରି ଇଚ୍ଛା କଲା ।

ଦିନେ ଝିଅଟି ଘର ପାଖ ଝରଣାରେ ସ୍ନାନ କରୁଥିଲା । ସେ ତା'ର ପ୍ରବାଳ ହାରଟିକୁ ଗୋଟିଏ ଗଛ ଡାଳରେ ଟାଙ୍ଗି ଦେଇଥିଲା । ଏତିକିବେଳେ ଗୋଟିଏ ଡାମରାକାଉ ଆସି ହାରଟିକୁ ଥଣ୍ଟରେ ଧରି ଜଙ୍ଗଲ ଆଡ଼କୁ ଉଡ଼ିବାକୁ ଆରମ୍ଭ କଲା । ଏହା ଦେଖି ଝିଅଟି ଡାମରାକାଉକୁ ଅନୁସରଣ କଲା । ଯା' ଭିତରେ ଝିଅଟି ଜଙ୍ଗଲରେ ଥିବା ଏକ ବଡ଼ ଘରେ ପହଞ୍ଚିଗଲା । ସେ ଦେଖିଲା, ସେ ଘରେ କେହି ନାହାନ୍ତି । ସେହି ଘର ତାକୁ ନିଜର ନିଜର ଲାଗୁଥିଲା । ସେହି ଝିଅଟି ଘରେ ଥିବା ଚାଉମିନ୍‌କୁ ରାନ୍ଧି ଶୋଇବା ବିଛଣା ପାଖରେ ଥାଳିଆରେ ରଖିଦେଇ ଖଟ ତଳେ ଲୁଚିଗଲା । କିଛି ସମୟ ପରେ ଭାଇମାନେ ଘରେ ପହଞ୍ଚି ଚାଉମିନ୍ ଥୁଆ ହୋଇଥିବା ଦେଖିଲେ । ସେମାନେ ଆନନ୍ଦ ମନରେ ଖାଇଲେ; ହେଲେ ସେମାନେ ସନ୍ଦେହ କଲେ ଯେ ହୁଏତ କୌଣସି ଏକ ଡାହାଣୀ କୌତୂହଳବଶତଃ ଏହି କାମ କରିଛି ।

ଏହାପରେ ପ୍ରକୃତରେ କିଏ ଏହି କାମ କରିଛି, ତାହା ଜାଣିବା ଉଦ୍ଦେଶ୍ୟରେ ସେମାନେ ଗୋଟିଏ ଭାଇକୁ ଘରେ ଜଗାଇ ଅନ୍ୟ ଭାଇମାନେ ନିଜ କାମରେ ବାହାରିଗଲେ; ହେଲେ ଝିଅଟି ଏତେ ସମୟ ଧରି ଲୁଚି ରହିପାରନ୍ତା ବା କିପରି ? ବାଧହୋଇ ବାହାରକୁ ଆସିବାବେଳେ ଧରାପଡ଼ିଗଲା । ତା'ପରେ ଭାଇ ସହ କଥାବାର୍ତ୍ତା ହେଲାପରେ ଜାଣିବାକୁ ପାଇଲା ଯେ ସେହି ଝିଅଟି ଆଉ କେହି ନୁହେଁ, ସେ ହେଉଛି ତାଙ୍କର ସାନଭଉଣୀ । ଏହାପରେ ଅନ୍ୟ ଭାଇମାନେ ଜଙ୍ଗଲରୁ ଆସି ସାନଭଉଣୀ ସହିତ ପରିଚିତ ହେଲେ । ସମସ୍ତେ

---

ଦୁଇଭାଇଙ୍କୁ ସମ୍ମାନ ଜଣାଇ ଏକ ସ୍ୱତନ୍ତ୍ର ଗ୍ୟାଲେରୀ, 'ରାଇଟ୍‌ବ୍ରଦର୍ସ ଗ୍ୟାଲେରୀ' ନାମରେ ପ୍ରତିଷ୍ଠିତ ହୋଇଛି । ସେଠାରେ ସେମାନେ ଉଡ଼ାଇଥିବା ଉଡ଼ାଜାହାଜଟି ସୁରକ୍ଷିତ ଅବସ୍ଥାରେ ରହିଛି । ଦୈନିକ ହଜାର ହଜାର ଦର୍ଶକ ଏହି ଗ୍ୟାଲେରୀଟିକୁ ଦେଖି ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଦେଇ ଚାଲିଛନ୍ତି ।

ଆମେ ମଧ୍ୟ ଏହି ବିଶ୍ୱବନ୍ଦ୍ୟ ପୁରୁଷଙ୍କୁ ଆମର ଶ୍ରଦ୍ଧାସୁମନ ଅର୍ପଣ କରିବାକୁ ଭୁଲି ନ ଥିଲୁ । ଏହି ଗ୍ୟାଲେରୀଟିକୁ ଦେଖି ସାରିଲା ପରେ ଆମେ ଅନ୍ୟ ଗ୍ୟାଲେରୀ ଆଡ଼କୁ ଚାଲିଲୁ । (କ୍ରମଶଃ)

*ଉଉରଣ୍ଡା, ମଣ୍ଡାସାହି, ଜଗତସିଂହପୁର*

ସାନଭଉଣୀକୁ ପାଖରେ ରହିବା ପାଇଁ ପ୍ରବର୍ତ୍ତାଇଲେ । ତେଣୁ ସାନଭଉଣୀ ଖୁସି ମନରେ ଭାଇମାନଙ୍କ ପାଖରେ ରହିଲା ।

ଦିନେ ସନ୍ଧ୍ୟାରେ ଝିଅଟି ରାତ୍ରିଭୋଜନ ପ୍ରସ୍ତୁତ କରିବା ପାଇଁ ବାହାରିଲା ପରେ ଦେଖିଲା ଘରେ ନିଆଁ ନାହିଁ । ତେଣୁ ସେ ପାଖରେ ଥିବା କୁଡ଼ିଆକୁ ଗଲା । ସେଠାରେ ଗୋଟିଏ ବୁଢ଼ୀ ରହୁଥିଲା । ସେ ଦୟାପରବଶ ହୋଇ ଝିଅଟିକୁ ନିଆଁ ଦେଲା । ହେଲେ ଗୋଟିଏ ସର୍ତ୍ତ ରଖିଲା । ବୁଢ଼ୀଟି କହିଲା, "ହେ ଝିଅ ! ଏଇ ନିଆଁ ବଦଳି ପ୍ରତି ସନ୍ଧ୍ୟା ତୋ କାଣି ଆଙ୍ଗୁଠିରୁ ଟୋପାଏ ରକ୍ତ ନେବି ।" ଏହା ଶୁଣି ଝିଅଟି କହିଲା, "ମୋ ଭାଇମାନେ ଘର ଛାଡ଼ି କୁଆଡ଼େ ଯିବାକୁ ବାରଣ କରିଛନ୍ତି । ତେଣୁ ମୁଁ ଆସିପାରିବି ନାହିଁ ।"

ବୁଢ଼ୀଟି ସାଙ୍ଗେ ସାଙ୍ଗେ କହିଲା, "ତୁ ବ୍ୟସ୍ତ ହେବା ଦରକାର ନାହିଁ । ତୁ ସନ୍ଧ୍ୟା ହେଲେ ତମ ଘରକବାଟ କଣାରେ କାଣି ଆଙ୍ଗୁଠି ବଢ଼ାଇଦେଲେ ମୁଁ ରକ୍ତ ନେଇଯିବି ।" ବିଚରା ଝିଅଟି ଏହି ସର୍ତ୍ତ ମାନିନେଲା । ତା'ପରେ ବୁଢ଼ୀ ପ୍ରତି ସନ୍ଧ୍ୟାରେ ଝିଅଠାରୁ ରକ୍ତ ଶୋଷିନେଲା । ଫଳତଃ ଝିଅଟି ବିବର୍ଣ୍ଣା ଦିଶିବା ସହିତ ଧୀରେ ଧୀରେ ଦୁର୍ବଳ ହୋଇଗଲା । ଏହାଦେଖି ଭାଇମାନେ ବ୍ୟସ୍ତ ହୋଇପଡ଼ିଲେ । ତେଣୁ ଝିଅଟି ଭାଇମାନଙ୍କ ଆଗରେ ସବୁ କଥା ଗୋଟି ଗୋଟି କରି କହିଗଲା । ସମସ୍ତେ ବୁଢ଼ୀଟି ଗୋଟିଏ ଅସୁରୁଣୀ ବୋଲି ଜାଣିଗଲେ । ତେଣୁ ତାକୁ ମାରିବାକୁ ଉପାୟ ପାଞ୍ଚିଲେ ।

ତା'ପରଦିନ ସନ୍ଧ୍ୟାରେ ଡାହାଣୀ ଆସି ଝିଅର ଆଙ୍ଗୁଠି ବଢ଼ାଇବାକୁ ଅପେକ୍ଷା କଲା; ହେଲେ ଝିଅଟି ଆଉ ପୂର୍ବପରି ଆଙ୍ଗୁଠି ବଢ଼ାଇଲା ନାହିଁ । ଏହାଦେଖି ବୁଢ଼ୀଟି ରାଗରେ ବିରାଡ଼ି ଯାଆଆସ କରୁଥିବା ଗୋଟେ ବଡ଼ କଣାରେ ମୁଣ୍ଡ ଭର୍ତ୍ତି କରି ଘର ଭିତରକୁ ଚାହିଁଲା । ଇତ୍ୟବସରରେ ପୂର୍ବରୁ ଛକି ବସିଥିବା ଭାଇଜଣକ ଟାଙ୍ଗିଆରେ ବୁଢ଼ୀର ଗଣ୍ଡିକୁ ମୁଣ୍ଡଟା ଅଲଗା କରିଦେଲା । ତା'ପରେ ସମସ୍ତେ ବୁଢ଼ୀକୁ ଦୂରରେ ଗୋଟେ ଗାତ ଖୋଳି ପୋତିଦେଲେ ।

ଆଉ ଦିନକର କଥା । ଝିଅଟି ପାଖ ଝରଣାକୁ ସ୍ନାନ ନିମନ୍ତେ ଯାଇଥିଲା । ସେ ଦେଖିଲା, ଗୋଟିଏ ବୁଢ଼ୀ କେତେଗୁଡ଼ିଏ ବାସନ ଝରଣାରେ ଧୋଉଛି । ତେଣୁ ସେ ଝିଅଟି ବୁଢ଼ୀକୁ କହିଲା, "ପଇସା ଅଭାବରୁ ତାଙ୍କ ଘରେ ଆବଶ୍ୟକସଂଖ୍ୟକ ତାଟିଆ କିଣାଯାଇ-ପାରିନାହିଁ ।" ଏହା ଶୁଣି ବୁଢ଼ୀଟି ଝିଅଟିକୁ ସେଥିରୁ ବାରଟି ତାଟିଆ ଉପହାର ଭାବେ ଦେଲା । ଝିଅଟି ସେହି ତାଟିଆଗୁଡ଼ିକ ଆଣି ମନଖୁସିରେ ଘରକୁ ଫେରିଲା । ଝିଅଟି ସବୁ ତାଟିଆରେ ପାଣି ଭରି ରଖିଦେଲା । ଭାଇମାନେ ଘରକୁ ଫେରି ପାଣିଭରା ତାଟିଆ ଦେଖି ଖୁସି ହେଲେ । ଏହାପରେ ସେମାନେ ମନ ଆନନ୍ଦରେ ପାଣି ପିଇଲେ । ଏହାପରେ ଯାହା ହେଲା, ସେ କଥା ଶୁଣିଲେ କେହି ହେଲେ ବିଶ୍ୱାସ କରିପାରିବେ ନାହିଁ । ପ୍ରଥମ



ଏଗାର ଜଣ ଭାଇ ଅଧିକ ପାଣି ପିଇଥିବାରୁ ସେମାନେ ଗୋଟିଏ ଗୋଟିଏ ବଳଦ ପାଲଟିଗଲେ; କିନ୍ତୁ ସାନଭାଇଟି ଅଳ୍ପ ପାଣି ପିଇଥିବାରୁ ସେ ଗୋଟିଏ ମେଣ୍ଢାଛୁଆ ପାଲଟିଗଲା । ଏହାଦେଖି ଝିଅଟି ମନଦୁଃଖରେ ଭାଙ୍ଗିପଡ଼ିଥିଲେ ମଧ୍ୟ ଭାଇମାନଙ୍କର ଯତ୍ନ ଭଲ ଭାବେ ନେଉଥିଲା ।

କିଛିଦିନାନ୍ତେ ଜଣେ ରାଜକୁମାର ଜଙ୍ଗଲକୁ ଶିକାର ଉଦ୍ଦେଶ୍ୟରେ ଆସି ବାଟ ଭୁଲିଗଲେ । ସେ ଏଣେତେଣେ ବୁଲି ଶେଷରେ ଏହି ଝିଅ ଘରେ ଆସି ପହଞ୍ଚିଲେ । ସେ ଝିଅଟିର ରୂପଗୁଣରେ ମୁଗ୍ଧ ହୋଇ ତାକୁ ବିବାହ କରିବା ନିମନ୍ତେ ଇଚ୍ଛାପ୍ରକାଶ କଲେ । ଏହାଶୁଣି ଝିଅଟି ଜଣକ କହିଲା, "ମୁଁ ମୋ ବଳଦ ଓ ମେଣ୍ଢାଭାଇମାନଙ୍କ ଖାଦ୍ୟପେୟ କଥା ବୁଝିବା ସହିତ ସେମାନଙ୍କର ଯତ୍ନ ନେଉଛି । ସେମାନଙ୍କୁ କିପରି ଛାଡ଼ି ଯାଇପାରିବି ?" ଏହା ଶୁଣି ରାଜକୁମାର ସେମାନଙ୍କ ସହ ଭାଇମାନଙ୍କୁ ରାଜପ୍ରାସାଦକୁ ନେଇଯିବା ପାଇଁ ପ୍ରସ୍ତାବ ଦେଲେ । ଏହାପରେ ସମସ୍ତେ ଆନନ୍ଦ ମନରେ ରାଜପ୍ରାସାଦକୁ ଫେରିଲେ । ସେଠାରେ ଝିଅଟି ରାଜରାଣୀର ସମ୍ମାନ ଲାଭ କରି ଖୁସିରେ ରହିଲା । ଏହାପରେ ବୁଢ଼ାରାଜା ରାଜକୁମାରଙ୍କୁ ରାଜସିଂହାସନରେ ବସାଇ ରାଜା କରାଇଲେ ।

ସେହି ଅସୁରୁଣୀଟି ଝିଅଟିର ପିଛା ଛାଡ଼ି ନ ଥିଲା । ଝିଅଟି ରାଣୀ ହେଲାପରେ ମଧ୍ୟ ପ୍ରତ୍ୟହ ନିଜର ମେଣ୍ଢା ଭାଇଟି ସହ ରାଜଉଦ୍ୟାନରେ ବୁଲୁଥିଲା । ଏହା ଲକ୍ଷ୍ୟ କରି ସେହି ବୁଢ଼ୀ ଡାହାଣୀଟି ରାଣୀଙ୍କୁ କିଛି ଅଙ୍ଗୁର ତୋଳିଦେବାକୁ ଅନୁରୋଧ କଲା; ହେଲେ ଅଙ୍ଗୁର ଗଛଟି ରାଜ ଉଦ୍ୟାନରେ ଗୋଟିଏ କଡ଼ର ଜଳାଶୟ ପାଖକୁ ଥିଲା । ଅନୁରୋଧ ରକ୍ଷା କରିବାକୁ ଯାଇ ରାଣୀ ଅଙ୍ଗୁର ତୋଳିବାବେଳେ ବୁଢ଼ୀଟି ଜୋର୍‌ରେ ତାଙ୍କୁ ପାଣିକୁ ପେଲିଦେଲା । ତେଣୁ ରାଣୀ ପାଣିରେ ଗଛର ଗୋଟିଏ ଡାଳ ଧରି ଝୁଲି ରହିଲେ । ଏହାଦେଖି ରାଣୀଙ୍କର ମେଣ୍ଢା ଭାଇଟି ଏପଟସେପଟ ହୋଇ ଯେତେ ରଡ଼ି କଲେ ମଧ୍ୟ କେହି ଏ ରଡ଼ିର ଅର୍ଥ ବୁଝିପାରିଲେ ନାହିଁ ।

ଇତ୍ୟବସରରେ ସେ ବୁଢ଼ୀ ରାଣୀଙ୍କ ରୂପ ଧାରଣ କରି ରାଣୀଙ୍କ ବିଛଣାରେ ଜ୍ୱର ହେବାର ଅଭିନୟ କଲା ଏବଂ ରାଜାଙ୍କୁ କହିଲା, "ଆପଣ ମୋ ମେଣ୍ଢାଭାଇର ମାଂସ ମତେ ଖାଇବାକୁ ଦେଲେ ମୋ ଜର ଭଲ ହୋଇଯିବ ।" ଏହାଶୁଣି ରାଜା କହିଲେ, "ତୁମେ ତୁମର ମେଣ୍ଢାଭାଇକୁ ଖାଇବ ବୋଲି କିପରି କହୁଛ ?"

ହେଲେ ରାଣୀଙ୍କର ଏହି କଥା ଉପରେ ରାଜା ସନ୍ଦେହ କରି ଚିନ୍ତାଶୀଳ ମନରେ ରାଜଉଦ୍ୟାନ ଆଡ଼କୁ ଗଲେ । ସେଠାରେ ରାଜା ତାଙ୍କ ଶ୍ୟାଳକ ମେଣ୍ଢାର ରଡ଼ି ଶୁଣିଲା ପରେ ଦେଖିଲେ ଯେ ରାଣୀ ପାଣିରୁ ଉଠିଆସି ପାରୁନାହାନ୍ତି । ରାଜା ସାଙ୍ଗେ ସାଙ୍ଗେ ରାଣୀଙ୍କୁ ପାଣିରୁ ଉଦ୍ଧାର କରିଆଣିଲେ । ରାଣୀଙ୍କ ଠାରୁ ରାଜା ସବୁ କଥା ଶୁଣି ସାଙ୍ଗେ ସାଙ୍ଗେ ରାଜନଅରକୁ ଆସିଲେ । ରାଜାରାଣୀ ଅନ୍ତଃପୁରରେ ଥିବା ରାଣୀବେଶୀ ଅସୁରୁଣୀକୁ ସାଙ୍ଗେ ସାଙ୍ଗେ ମାରିବାକୁ ଆଦେଶ ଦେଲେ । ଅସୁରୁଣୀକୁ ମାରି ପୋଡ଼ିଦିଆଗଲା ।

ପରେ ବଡ଼ ବିଚିତ୍ର ଘଟଣାଟିଏ ଘଟିଲା । ଏହାର ଅଳ୍ପ ମୁହୂର୍ତ୍ତ ମଧ୍ୟରେ ବଳଦ ଭାଇମାନେ ଓ ମେଣ୍ଢାଭାଇ ପୂର୍ବର ସୁନ୍ଦର ରୂପ ଧାରଣ କଲେ । ରାଜାରାଣୀଙ୍କ ଆନନ୍ଦର ସୀମା ରହିଲା ନାହିଁ । ଏହାପରେ ରାଜାରାଣୀ ଓ ରାଣୀଙ୍କ ଭାଇମାନେ ଏକାଠି ମହାଆନନ୍ଦରେ ଦିନ ବିତାଇଲେ । *(ଇଟାଲି ଦେଶର ଲୋକକଥା)*

*ନାଉଗାଁ ହାଟ, ଜଗତସିଂହପୁର - ୧୩*

**



# ଖୁସି ଯିବ ବରଷି

ଡକ୍ଟର ସୁନାମଣି ରାଉତ

ଆକାଶରେ ନାହିଁ ଆଉ ମେଘରଜା ଧମକ
କାନଫଟା ଘଡ଼ଘଡ଼ି ବିଜୁଳିର ଚମକ ।
ଶରତ ଆସିଛି ବୋଲି ସବୁ ସଫାସୁତୁରା
ବାଟଘାଟ ନଈପାଟ ଓଠେ ହସ ଉତୁରା ।
ବିଜେ ହେବେ ମାଆ ମୋର ଏଇ ଧରା ଧାମରେ
ଆସ ମଧୁ, ମୀରା, ମୋନା, ରିଆ, ରୋଜା,ରାମରେ ।

ଆମେ ଜୁଟି ପୂଜା ଛୁଟି କଟାଇବା ଏମିତି
ସଭିଏଁ କହିବେ ଆହା ଇଏ ହେଲା କେମିତି ?
ବାଟଘାଟେ ଖାଲଖମା ପୋତିଦେବା ବାଲିରେ
ଗାଡ଼ିଘୋଡ଼ା ଲୋକବାକ ଯିବେ ସବୁ ଚାଲିରେ ।

ଦୁଃଖୀ, ରଙ୍କି, ଭିକାରୀଙ୍କୁ ଦେବା ନେଇ ଆହାର
ପିନ୍ଧିବାକୁ ଦେବା ତାକୁ ଲୁଗା ନାହିଁ ଯାହାର ।
ଏ ବରଷ ବାପା ଦେବେ ଯେଉଁ ପୂଜା ଖରଚା
ସେଥିରେ କରିବା ଆମେ ଗରିବର ଚରଚା ।

ଖୁସି ହୋଇ ମାଆ ଦୁର୍ଗା ହସ ଦେବେ ବରଷି
ଚାରିଆଡ଼େ ସୁଖଶାନ୍ତି ଖୁସି ଯିବ ବରଷି ।

*ରାଜାବଗିଚା, କଟକ- ୯*

❋❋

## କହିଲ ଦେଖି ?

ପାଞ୍ଚୋଟି ଅକ୍ଷରେ ଶବ୍ଦଟି ଆଣ
ସୃଷ୍ଟିର ଭିତ୍ତିକୁ ପ୍ରଥମେ ଜାଣ ।
ପ୍ରଥମ ଦ୍ୱିତୀୟ କରିଲେ ଯୋଗ
ମାନବ ଅର୍ଥକୁ ପାଅରେ ଆଗ ।
ଦ୍ୱିତୀୟ ତୃତୀୟ କଲେ ଏକାଠି
ପ୍ରଣାମ ଅର୍ଥକୁ ବୁଝରେ ବସି ।
ତୃତୀୟ ଚତୁର୍ଥ ଯେବେ ଯୋଡ଼ିବ
ଫସଲଟିଏ ତ ତେବେ ପାଇବ ।
ଚତୁର୍ଥ ପଞ୍ଚମ ମିଶାଇଦେଲେ
ସମୟ ଅର୍ଥକୁ ଜାଣରେ ଭଲେ ।
ତୃତୀୟ ପଞ୍ଚମ ଏକାଠି ମିଶା
ବିସ୍ତାର ଅର୍ଥକୁ ସେଇଠି ବସା ।
ଚତୁର୍ଥ ଦ୍ୱିତୀୟ ମିଶାଇଦିଅ
ଶୁଣିବା ଶକ୍ତିଟି ସେଥିରୁ ପାଅ ।
ଏହାର ଉତ୍ତର ଯିଏ କହିବ
ସୁନାପିଲାଟିଏ ସିଏ ହୋଇବ ।

**--ପୂଜାରାଣୀ ମଲ୍ଲିକ,** *+୩ ତୃତୀୟ ବର୍ଷ (ସମ୍ମାନ)*
*ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ*

(ଉତ୍ତର ୩୮ ପୃଷ୍ଠାରେ)

# କୋଳି

ଶ୍ରୀ ରାହାସ ରାୟ

କୋଳି ନବ କୋଳି, କୋଳି ନବ କୋଳି ! ଡାକ ଛାଡ଼ି ଛାଡ଼ି ସିଏ ଦାଣ୍ଡ ରାସ୍ତାରେ ଚାଲିଛି– କୋଳି ନବ କୋଳି ! ବୁଢ଼ୀର ଡାକ ଶୁଣିବା ମାତ୍ରେ ଘରୁ ବାହାରିଆସି ଦାଣ୍ଡରେ ପିଲାଏ ରୁଣ୍ଡ । ବୁଢ଼ୀର ଡାକ ସେମିତି ଚାଲିଛି– କୋଳି ନବ କୋଳି । ପିଲାମାନେ ତା' ପସରା ପାଖକୁ ଧାଇଁଆସି ପଚାରିଲେ, "ତୁ ତ ଡାକ ଛାଡ଼ିଛୁ– କୋଳି ନବ କୋଳି । କି କି କୋଳି ଆଣିଛୁ କହିଲେ ସିନା ଆମେ ଜାଣିବୁ । ଚାଉଳ ଆଣି ତୋ ପାଖକୁ ଆସିବୁ ।"

କୋଳିବାଲୀ ବୁଢ଼ୀ ଭାରି ଚାଲାକ । ବୟସ ତା'ବାଟରେ ଚାଲିଯାଇଛି ସିନା, ବୁଢ଼ୀ କିନ୍ତୁ ବୟସକୁ କିଆଁ ଡରିବ ? ପସରାଟିକୁ କାଖରେ ଜାକି ଡାକ ଛାଡ଼ି ଚାଲିଛି । ଘର ଭିତରୁ ପିଲାଏ ଆଉ ସମ୍ଭାଳି ହେଉଛନ୍ତି କେତେକେ ? ସେମାନଙ୍କ ଭିତରୁ ଜଣେ ଆଗଚଲା ପିଲା କହି ଉଠିଲା, "ହଇଲୋ ବୁଢ଼ୀ ? କହୁନୁ ତୁ କି କି କୋଳି ଆଣିଛୁ ? ଅସଲ କଥା ନ କହି ଖାଲି ଡାକ ଛାଡୁଛୁ, କୋଳି ନବ କୋଳି !"

ବୁଢ଼ୀ ତା' ଡାଲାକୁ ଭଲ କରି ଝାଡ଼ିଝୁଡ଼ି ଦେଇ ଆରମ୍ଭ କଲା, "ମୋ ପାଖରେ କ'ଣ ଗୋଟିଏ ରକମର କୋଳି ଅଛି ? ଚାରି/ପାଞ୍ଚ ରକମର କୋଳି ଅଛି ଟି ! ଭଇଁଚ କୋଳି, କ୍ଷୀରି କୋଳି, ଜାମୁକୋଳି, ବରକୋଳି, କଣ୍ଟେଇକୋଳି ପୁଣି ଖଜୁରକୋଳି । ଦେଖ, ଦେଖୁନ ମୋ ପସରାକୁ । ହରେକ ରକମର କୋଳି । ତମମାନଙ୍କର ପାଇଁ ତ ଆଣିଛି । ବଣରୁ ନଗଦ ତୋଳି ଆଣିଛି । ସଜ କୋଳି । କଞ୍ଚା ନୁହେଁ କି ଶୁଖିଲା ନୁହେଁ । ପାଚିଲା ପାଚିଲା ଦେଖି ନିଜେ ତୋଳି ଆଣିଛି ।

ତମେମାନେ କିଏ କେତେ ନେବ, କୋଉ କୋଳି ନବ କହିଲେ ସିନା । ଖାଲି ମୋ ଡାକ ଶୁଣି ତରବର ହୋଇ ଦଉଡ଼ି ଆସିଲେ ମୁଁ କ'ଣ କରିବି କହିଲ ? ଜଣ କଣ କରି ବତାଅ, କିଏ କୋଉ କୋଳି ନବ ।"

ସଭିଙ୍କ ଭିତରୁ ଗୋଟାଏ ପିଲା ତା ଆପଣା ଇଚ୍ଛା କଥା କହିବାରୁ ଅନ୍ୟ ପିଲାମାନେ ସେମାନଙ୍କ କଥା ଆପେ ଆପେ କହି ଚାଲିଲେ । ଜମା ହୋଇଥିବା ପିଲାମାନେ ଘରୁ ଚାଉଳ ଆଣି ବୁଢ଼ୀ ପସରା ପାଖରେ ହାଜର । ଗୋଟିଏ ପରେ ଗୋଟିଏ ସବୁ ପିଲା ନିଜ ନିଜ ମନମୁତାବକ କୋଳି ନେଇ ଘରୁ ମାଆମାନଙ୍କ ପାଖରୁ ଉଷୁନା ଚାଉଳ ଆଣି ବୁଢ଼ୀ ପାଖେ ଠିଆ ହେଲେ । ପିଲାଙ୍କ ସଂଖ୍ୟା ଆସ୍ତେ ଆସ୍ତେ ବଢ଼ି ଚାଲିଲା । ସମସ୍ତେ କୋଳି ପାଇଁ ଉଭା । ବୁଢ଼ୀର ମନ ବିଲ୍‌କୁଲ୍ ଖୁସି । ଆଜି କି ବେଳା ଦେଖି ଆସିଥିଲା କେଜାଣି ବୁଢ଼ୀର ପସରା ଖାଲି ।

କୋଳି ଗଲା, ଚାଉଳ ଆସିଲା ବୁଢ଼ୀର ଖୋରାକ ପାଇଁ । ବୁଢ଼ୀର ସଜକୋଳି ପାଇ ପିଲାଏ ଖୁସି । ଯିଏ ଯାହା ଘରକୁ ଗଲେ । ବୁଢ଼ୀ ବି ଖାଲି ପସରାରେ ଚାଉଳ ଧରି ତା' ଘରକୁ ଗଲା । ଇଏ କ'ଣ ଗୋଟିଏ ଦିନର ଧନ୍ଦା ? ବୁଢ଼ୀ ବେଳ ଦେଖି କୋଳି ଧରି ଗାଁ ଭିତରକୁ ପଶିଆସି ସବୁଦିନିଆ ଡାକ ଛାଡ଼େ । ତା' ଡାକ ଶୁଣି ଛୁଟି ଆସନ୍ତି ବୁଢ଼ୀ କି କୋଳି ଆଣିଛି ବୋଲି । କୋଳି ଗୋଟିଏ ଏମିତି ଜିନିଷ, ଯାହା ସହଜରେ ପିଲାଙ୍କୁ ଆପଣେଇନିଏ ।

ଦିନେ କ'ଣ ହେଇଛି ବୁଢ଼ୀ ତା ପାଇଟି ସାରି



ତା ଖବର ବୁଝିବାକୁ ତୋତେ ଟିକିଏ କଷ୍ଟ ହେବ । ଦେଖିବା କ'ଣ ହେଉଛି ! ତୋ କୋଳି ବେପାରରେ କିଛି କ୍ଷତି ହେବନି ।"

ବାସ୍ ବୁଢ଼ୀ ଆଉ ପୁଅକୁ କ'ଣ କହିବ ? ଛୋଟ ଛୁଆଟାକୁ ଶ୍ରଦ୍ଧା କରି ତାକୁ ନିଜର ପିଲା ଭଳି ପାଳି ଚାଲିଲା । ତାକୁ ରଖିବାରେ ବୁଢ଼ୀକୁ ବିଶେଷ କିଛି କଷ୍ଟ କରିବାକୁ ପଡ଼ିଲାନି । ଗଲାଆସିଲା ସମସ୍ତେ ଛୁଆକୁ ଶ୍ରଦ୍ଧା କରନ୍ତି । ବୁଢ଼ୀ ବି ତାକୁ କେତେ ରକମର ଖେଳ ଶିଖେଇଲା । ତା ନାଆଁ ଦେଲା ମନୁ । ''ମନୁ ମୋର ନାଚ୍ କରିବ । ମନୁ ମୋର ପାଠ ପଢ଼ିବ । ମନୁ ମୋର ହାକିମ ହେବ । ମନୁ ମୋର ଖେଳ ଖେଳିବ ।'' ଛୋଟ ଛୋଟ ପିଲା ଆସି ମାଙ୍କଡ଼ଛୁଆ ସାଙ୍ଗରେ ଖେଳ ଖେଳିଲେ– ଗୀତ ବୋଲିଲେ ସେ ମାଙ୍କଡ଼ଛୁଆ ନାଚ ନାଚେ । ବୁଢ଼ୀର ଚାରିପୁଅ ଭିତରୁ ବୀରା ବଡ଼ । ଶିରିଆ ସାନ । ଗାଆଁଗଣ୍ଡା ସମସ୍ତେ ବୁଢ଼ୀକୁ ବୀରାମାଆ ବୋଲି ଡାକନ୍ତି ।

ଅଳ୍ପ ଅଳ୍ପ କୋଳି ତୋଳି ଆଣେ, ବୁଢ଼ୀ ଗାଁଗଣ୍ଡାରେ ତା ପସରା ମେଲି ଡାକ ଛାଡ଼ି ଚାଲେ । ଡାକ ଶୁଣି ପିଲାଏ ବୁଢ଼ୀ ପାଖକୁ ଧାଇଁ ଆସନ୍ତି କୋଳି ଆଶାରେ । ଟୁଙ୍ଗ୍‌ଟାଙ୍ଗ୍ ବୁଢ଼ୀର ବେପାର ଚାଲେ ।

ସେଇ ମାଙ୍କଡ଼ଛୁଆ ତ ଆଉ ଛୁଆ ନୁହେଁ, ସିଏ ବଡ଼ ହେଇଗଲାଣି । ବୁଢ଼ୀ ତା ପାଇଟି ସାରି ମାଙ୍କଡ଼ ସାଙ୍ଗରେ ଖୁସିରେ ଖେଳ ଖେଳେ । ଦିନେ ମନୁକୁ ନଚାଉଥିବା ସମୟରେ ମନୁ ବୁଢ଼ୀ ଉପରକୁ ଝାଂପ ମାରି ତା ମୁହଁରୁ ନାକଟିକୁ କାମୁଡ଼ିନେଇ ପଳେଇଲା ଉପରକୁ ।

ଧରି ଘରକୁ ଫେରୁଛି, ତା' ସବା ସାନ ପୁଅ ଶିରିଆ ସାଥିରେ ଦେଖାହେଲା । ବୁଢ଼ୀ ଶିରିଆ ମୁହଁକୁ ଚାହିଁଲା ବେଳକୁ ଦେଖିଲା ତା' ବାଁ କାନ୍ଧ ଉପରେ ଗୋଟାଏ ମାଙ୍କଡ଼ଛୁଆ ବସିଛି । ଶିରିଆର କାଠହଣା-ବେଳେ ସେଇ ମାଙ୍କଡ଼ଛୁଆଟା କେମିତି ଲଂଫ ମାରି ତା' ବାଁ କାନ୍ଧ ଉପରେ ବସିଯାଇଛି ।

ଶିରିଆ ଆଉ କରିବ କ'ଣ ? ଛୁଆଟା ନିହାତି ଛୋଟ । କେମିତି ତା' ମାଆ କୋଳରୁ ଗଛ ଉପରୁ ଖସି ପଡ଼ିଛି । କେମିତି କୁଆଡ଼େ ଯିବ ? ଶିରିଆ ଘର ଭିତରକୁ ପଶି ଆସି 'ବୋଉ, ବୋଉ' ଡାକ ଛାଡ଼ିଲା । ଶିରିଆକୁ ଦେଖି ବୁଢ଼ୀ କେମିତି କ'ଣ କରିବ ଭାବିପାରିଲାନି । ତଥାପି କହିଲା, "ତୁ ଏ ମାଙ୍କଡ଼ଛୁଆକୁ କୁଠୁ ଆଣିଲୁ ?" ଶିରିଆ କି ଉତ୍ତରଦେବ ? ତଥାପି କହିଲା, "ବୁଝିଲୁ ବୋଉ, ମୁଁ ତାକୁ କୁଠୁ ଆଣିନି । ସିମିତି କିମିତି ତା ମାଆ କୋଳରୁ ଖସିପଡ଼ି ମୋ କାନ୍ଧ ଉପରେ ବସିଯାଇଛି । ନିହାତି ଛୁଆଟା । ତୁ ତାକୁ ଆମ ଘରେ ରଖ । ସେ ବଡ଼ ହେଲେ ମାଆକୁ ଖୋଜି ମାଆ ପାଖକୁ ଚାଲିଯିବ । ଏଇଲେ

ବୀରାମା ଭୋ ଭୋ କାନ୍ଦି ଉଠିଲା । ବୀରାମା' କାନ୍ଦ ଶୁଣି ଛୁଆବଡ଼ ଗାଁ ଗୋଟାକର ମଣିଷ ଆସି ବୀର ମା' ଦୁଆରେ ହାଜର । "କ'ଣ ହେଲା ? କ'ଣ ହେଲା?'' ଘରେ କିଏ ଅଛି ଯେ ଉତ୍ତର ଦେବ? ଯେ ଯୁଆଡ଼େ କାମଧନ୍ଦାରେ ବାହାରକୁ ଯାଇଛନ୍ତି । ବୀରମା'ର ଖାଲି ଭେଁ ଭେଁ ରଡ଼ି । କ'ଣ କରିବ ? କାନ୍ଦଣା । ଖାଲି କାନ୍ଦଣା ।

ଶିରିଆ ତା କାମରୁ ଫେରି ମାଆ ବୁଢ଼ୀର ଏ ଦଶା ଦେଖି କରିବ କ'ଣ ? ଡାକ୍ତରଖାନାକୁ ନିବା ଛଡ଼ା ଉପାୟ ନାହିଁ । ଧରାଧରି କରି ଦୁଇଚାରି ଲୋକ ମିଶି ବୁଢ଼ୀକୁ କୌଣସିମତେ ମଣିଜଙ୍ଗା ଡାକ୍ତରଖାନାରେ ପହଞ୍ଚେଇ ତୁରନ୍ତ ଚିକିତ୍ସା ବ୍ୟବସ୍ଥା କଲେ । ଆଉ 'ନାକ' କୋଉଠୁ ଆସିବ ଯେ ବୁଢ଼ୀ ମୁହଁରେ ଯୋଡ଼ା ହେବ ? ନାକ ନାହିଁ, ବୁଢ଼ୀ କାହାକୁ ମୁହଁ ଦେଖେଇବ ? ନାକୋଇ ହୋଇ ବଞ୍ଚିବା ଛଡ଼ା ଆଉ ଉପାୟ କ'ଣ ? ମୁହଁକୁ ଲୁଗା କାନିରେ ଢାଙ୍କି ଯା'ଆସ କଲା ସିନା ଆଉ ଗାଁ'ଗଣ୍ଡାକୁ କୋଳି ବେପାର ନେଇ ଯାଇପାରିଲା ନାହିଁ । ତା ମୁହଁକୁ ଲୁଗାକାନିରେ ଘୋଡ଼େଇ ଘୋଡ଼େଇ ଚାଲ୍‌ବୁଲ୍ କଲା । ମନେମନେ କାନ୍ଦିଲା । ମନୁ ତାର ସବୁ ମାଟି କରିଦେଇ ଚାଲିଗଲା । ସବୁଦିନ ପାଇଁ ଭଲ ମଣିଷକୁ 'ନାକୋଇ' ସଜେଇ ଗଲା । ବୀରାମା' କୋଳି ବେପାର ସବୁଦିନ ପାଇଁ ବନ୍ଦ ହୋଇଗଲା । ସେମିତିକା ସଜ କୋଳି ଖାଇବା ପିଲାଙ୍କ ଭାଗ୍ୟରେ ଆଉ ଜୁଟିଲାନି ।

'କୋଳି ନବ କୋଳି' ଡାକ ସବୁଦିନ ପାଇଁ ବନ୍ଦ ହୋଇଗଲା ବୀରାମା ତୁଣ୍ଡରୁ । ଯେତେ କାନ୍ଦିଲେ ଆଉ ହବ କ'ଣ ? ମାଙ୍କଡ଼ ପୋଷିବାର ଫଳ ସେ ପାଇଲା ।

(ସତ କଥା)

*ତ୍ରିନୟନୀ, ଫ୍ରେଣ୍ଡସ୍ କଲୋନୀ, କଟକ- ୧*

❋❋

## ଦିଅ ଏଥିପ୍ରତି ନଜର

ଶ୍ରୀ ଭାସ୍କର ଚନ୍ଦ୍ର ଦାସ

ବାପା ପଚାରିଲେ ମାଆକୁ
ସେ ଘରେ କେହି ଜଣିଏ ତ ନାହିଁ
ପଙ୍ଖାଟା ଘୂରୁଚି କିଆଁକୁ ?

କେହି ନାହିଁ ଟିଭି ଚାଲିଚି
ତୁଚ୍ଛାରେ ବିଜୁଳି ଅପଚୟ କରି
ପଇସା ଦେବାକୁ ପଡୁଛି ।

ରୋଷଶାଳେ କେହି ନାହିଁ ତ
ହିଟର ଜଳୁଛି ମିଟର ଉଠୁଛି
ନଜର ଦଉନା କେହି ତ !

କଳ ଖୋଲା ପାଣି ବହୁଛି
ଥରୁଟିଏ କେହି ଦେଖୁନା ତ କାହିଁ
ଆନେ ଦୁଃଖ ସାର ହେଉଛି ।

ତୁମେ ଯଦି କର ଏମିତି
ତୁଚ୍ଛାଟାରେ କେତେ ଦେଶ ଧନ ଯେତେ
ନ ସରିବ କୁହ କେମିତି ?

ଏସବୁ ତ ତୁମ ନିଜର
ଏ କଥାକୁ ଭୁଲି ହେବ କିଆଁ ଭାଳି
ଦିଅ ଏଥିପ୍ରତି ନଜର ।

*ମେଘଡମ୍ବରୁ, କୁରୁଡ଼ା,*
*ବାଲେଶ୍ୱର- ୭୫୬୦୫୬*

# ପଦେ କଥାରେ ପାହାଡ଼ ଉଡ଼ିଗଲା

ଶ୍ରୀ ସୁଧାଂଶୁ ଶେଖର ଦ୍ୱିବେଦୀ

ଅନେକ ଦିନ ତଳର କଥା । ସେତେବେଳେ ବଶିଷ୍ଠ ମୁନିଙ୍କ ଆଶ୍ରମରେ ପ୍ରାୟ ଦେଢ଼ଶହଟି ଗାଇ ଚରୁଥିଲେ । ସେମାନଙ୍କ ଖାଇବା-ପିଇବାଠାରୁ ଆରମ୍ଭ କରି ସେବା-ଯତ୍ନ ଇତ୍ୟାଦି ତପସ୍ୱୀ ବାଳକମାନେ କରୁଥିଲେ । ସେହି ଗାଇମାନଙ୍କ ଭିତରେ ସୁରଧେନୁ ଓ ନନ୍ଦିନୀ ଗାଇଦୁଇଟି ମୁନିଙ୍କ ଆଶ୍ରମର ଶୋଭା ଥିଲେ । ନନ୍ଦିନୀକୁ କେବେ ବାନ୍ଧିବାକୁ ପଡୁ ନ ଥିଲା । ତା'ର ଯେତେବେଳେ ଚରାବୁଲା କରିବାକୁ ଇଚ୍ଛା ହୁଏ, ଆପେ ଆପେ ବଣ ମଧ୍ୟରେ ଚରାବୁଲା କରି ପୁଣି ଆଶ୍ରମ ନିକଟକୁ ଫେରିଆସେ ।

ଇତ୍ୟବସରରେ ଦିନେ ମୁନି ବିଶ୍ୱାମିତ୍ର ବଶିଷ୍ଠଙ୍କ ନିକଟରେ ପହଞ୍ଚି ନନ୍ଦିନୀ ଗାଇଟିକୁ ନେଇଯିବା ପାଇଁ ଅନୁରୋଧ କଲେ; କିନ୍ତୁ ବଶିଷ୍ଠ ନନ୍ଦିନୀକୁ ଦେଇପାରିବେ ନାହିଁ ବୋଲି ସ୍ପଷ୍ଟ ମନା କରିଦେଲେ । ଫଳରେ ବିଶ୍ୱାମିତ୍ର କ୍ରୋଧିତ ହୋଇ ତପଃବଳ ଦ୍ୱାରା ବଶିଷ୍ଠଙ୍କ ସହ ଲଢ଼େଇ ଆରମ୍ଭ କରିଦେଲେ । ମୁନି ବଶିଷ୍ଠ ମଧ୍ୟ ତପସ୍ୱୀ ଭାବେ ବିଶ୍ୱାମିତ୍ରଙ୍କଠାରୁ ଊଣା ନୁହନ୍ତି । ଦୁହିଁଙ୍କର ତପଃବଳ ଦ୍ୱାରା ବହୁ ସମୟ ଧରି ହାର୍‌ଜିତ୍‌ର ଲଢ଼େଇ ଚାଲିଲା । ଶେଷରେ ବିଶ୍ୱାମିତ୍ର ପରାଜିତ ହେଲେ । ତାଙ୍କ ମନ ଭୀଷଣ କ୍ରୋଧିତ ହୋଇଉଠିଲା । ସେ ଯେପରି ହେଉ ନନ୍ଦିନୀକୁ ବଶିଷ୍ଠଙ୍କଠାରୁ ନେଇଯିବା ପାଇଁ ଚାହୁଁଥିଲେ । ଏଥିପାଇଁ ସେ କିଛି ଉପାୟ ଅବଲମ୍ବନ ନିମନ୍ତେ ସେଠାରୁ ଚାଲିଗଲେ ।

ଏଥର ବଶିଷ୍ଠମୁନି ଖୁବ୍ ସାବଧାନ ହୋଇ ରହିଲେ । ନନ୍ଦିନୀ ବଣ ମଧ୍ୟକୁ ବୁଲାବୁଲି କରିବା ପାଇଁ ଗଲେ ସେ ଜଣେ ଶିଷ୍ୟକୁ ତା ସହ ପଠାଇଲେ । ଏଇମିତି ଦିନେ ନନ୍ଦିନୀ ବୁଲାବୁଲି କରୁକରୁ ସରସ୍ୱତୀ ନଦୀର ସେପାରିକୁ ଚାଲିଯାଇଥାଏ । ନଦୀ ଆର ପଟେ ବିଶ୍ୱାମିତ୍ର ଋଷିଙ୍କ ଆଶ୍ରମ । ସେହି ଆଶ୍ରମ ପଛରେ ଏକ ବଡ଼ ଗର୍ତ୍ତଟିଏ ଥାଏ । ସେହିଠାରେ ଚରୁଥିବା ସମୟରେ ହଠାତ୍ ନନ୍ଦିନୀର ଗୋଡ଼ ଖସିଗଲା, ଯାହାଦ୍ୱାରା ସେ ସେହି ଗର୍ତ୍ତ ମଧ୍ୟରେ ଗଳି ପଡ଼ିଲା ।

ବିଶ୍ୱାମିତ୍ର ଏହା ଦେଖି ଗର୍ତ୍ତ ମଧ୍ୟରୁ ନନ୍ଦିନୀକୁ ବାହାର କରିବା ପାଇଁ ବହୁତ ଚେଷ୍ଟା କଲେ; ମାତ୍ର ସବୁ ଚେଷ୍ଟା ତାଙ୍କର ବିଫଳ ହେଲା । ବଶିଷ୍ଠ ମୁନିଙ୍କ ପାଖେ ଖବର ପହଞ୍ଚିଲା । ସେ ଶୁଣିବାମାତ୍ରେ ଦୌଡ଼ି ଦୌଡ଼ି ଆସି ଗର୍ତ୍ତ ନିକଟରେ ପହଞ୍ଚିଲେ ଓ ନନ୍ଦିନୀର ଅବସ୍ଥା ଦେଖି ସରସ୍ୱତୀ ନଦୀକୁ ପ୍ରାର୍ଥନା କଲେ । ତାଙ୍କ ପ୍ରାର୍ଥନାରେ ପ୍ରଭାବିତ ହୋଇ ସରସ୍ୱତୀ ନଦୀ ନିଜର ନିର୍ମଳ ଜଳରାଶି ଦ୍ୱାରା ଗର୍ତ୍ତଟିକୁ ପୂର୍ଣ୍ଣ କରିଦେଲେ । ଫଳରେ ନନ୍ଦିନୀ ଗର୍ତ୍ତ ମଧ୍ୟରୁ ଉପରକୁ ଭାସି ଉଠିବାରୁ ସମସ୍ତେ ମିଶି ତାକୁ ଭୂମି ଉପରକୁ ନେଇଆସିଲେ, ପ୍ରାଥମିକ ଚିକିତ୍ସା ପରେ ନନ୍ଦିନୀ ସୁସ୍ଥ ହୋଇଉଠିଲା । ବଶିଷ୍ଠ ନନ୍ଦିନୀକୁ ସଙ୍ଗରେ ଘେନି ନିଜ ଆଶ୍ରମକୁ ଫେରିଆସିଲେ ।

ଏହି ବଶିଷ୍ଠ ମୁନି ଖୁବ୍ ପରୋପକାରୀ ଥିଲେ । ସେ ମନେ ମନେ ଭାବିଲେ– ଭୂମି ଉପରେ ଏତେ ବଡ଼ ଏକ ଗର୍ତ୍ତ ଦ୍ୱାରା ଅନ୍ୟ ପ୍ରାଣୀଙ୍କ ପାଇଁ ନିଶ୍ଚୟ ବିପଦ । ତାକୁ କିପରି ପୂର୍ଣ୍ଣ କରିବେ, ସେଥିପାଇଁ ସେ ସ୍ଥିର କରି ପର୍ବତରାଜା ହିମାଳୟ ନିକଟକୁ ଗଲେ । ହିମାଳୟ ବଶିଷ୍ଠମୁନିଙ୍କ ଆଗମନରେ ପ୍ରସନ୍ନ ହୋଇ ଆସିବାର ଜିଜ୍ଞାସା କରନ୍ତେ ମୁନି ଗର୍ତ୍ତଟିକୁ ପୂର୍ଣ୍ଣ କରିବା ପାଇଁ ତାଙ୍କୁ



ଏହ ପରେ ଅର୍ବୁକଙ୍କୁ ଡକାହୋଇ ପଚରାଗଲା । କିନ୍ତୁ କୌଣସି ପର୍ବତ ହିମାଳୟକୁ ଛାଡ଼ି ଯିବା ପାଇଁ ପ୍ରସ୍ତୁତ ହେଲେନାହିଁ । ଶେଷରେ ହିମାଳୟ ବଡ଼ ସଂକଟରେ ପଡ଼ିଲେ । କ'ଣ କରିବେ କିଛି ଚିନ୍ତା କରିପାରିଲେନି । ଯେମିତି ହେଉ ମୁନିଙ୍କ କଥା ତ ରଖିବାକୁ ପଡ଼ିବ ! ସେଥିପାଇଁ ସେ ଅତ୍ୟନ୍ତ ଦୁଃଖ ମନରେ ନିଜ ପୁଅ ନନ୍ଦୀବର୍ଦ୍ଧନଙ୍କୁ ମୁନିଙ୍କ ସହ ଯିବାକୁ ଆଦେଶ ଦେଲେ । ନନ୍ଦୀବର୍ଦ୍ଧନ ଆଦେଶ ଶୁଣିବାମାତ୍ରେ ବିନୟପୂର୍ବକ ପିତାଙ୍କୁ କହିଲେ, "ପିତାଶ୍ରୀ, ସେ ସ୍ଥାନ ଉତ୍ତମ ନୁହେଁ । ସେଠି ଫଳଭରା ବୃକ୍ଷ ନାହିଁ କି ସୁଗନ୍ଧ ଫୁଲ ମଧ୍ୟ ନାହିଁ । ତେଣୁ ମୋତେ ଏଠାରୁ ଯବା ପାଇଁ ବାଧ୍ୟ କରନ୍ତୁନି ।"

ନନ୍ଦୀବର୍ଦ୍ଧନଙ୍କର କଥା ଶୁଣି ବଶିଷ୍ଠ ତାଙ୍କୁ ବୁଝାଇ କହିଲେ, "ହେ ନନ୍ଦୀବର୍ଦ୍ଧନ ! ତୁମେ ସେ ସ୍ଥାନର କୌଣସି କଥା ଚିନ୍ତା କରନାହିଁ । ମୋ ତପଃ ବଳ ଦ୍ୱାରା ମୁଁ ସେ ସ୍ଥାନରେ ସରସ୍ୱତୀ ନଦୀର ନିର୍ମଳ ଜଳ ପ୍ରବାହିତ କରାଇବି । ଫଳପୁଷ୍ପ ଭରା ବୃକ୍ଷ ଉତ୍ପନ୍ନ କରିବି । ନନ୍ଦିନୀ ଓ କାମଧେନୁ ପରି ଗାଈ ସେଠାରେ ଚରାବୁଲା କରିବେ । ସେଠି ସବୁ ଦେବତାଙ୍କର ନିବାସସ୍ଥଳୀ ହେବ ଆଉ ସ୍ୱୟଂ ମୁଁ ତୁମ ଶିଖର ଉପରେ ବାସସ୍ଥାନ ନିର୍ମାଣ କରିବି ।''

କହିଲେ । ମୁନିଙ୍କ ନିକଟରୁ ଏଭଳି ଏକ ଜନହିତକର କଥା ଶୁଣି ହିମାଳୟ କହିଲେ, "ହେ ମୁନିବର ! ମୁଁ କୌଣସି ପର୍ବତକୁ ଉଠାଇ ଗର୍ତ୍ତଟିକୁ ପୂର୍ଣ୍ଣ କରିବା ପାଇଁ କ୍ଷମ ହେବି ସତ; ମାତ୍ର ଯେ କୌଣସି ପର୍ବତକୁ ସେ ପର୍ଯ୍ୟନ୍ତ ନେଇଯିବା ପାଇଁ ମୋ ପାଖରେ ଉପାୟ କିଛି ନାହିଁ ।

ବହୁ ପୂର୍ବରୁ ପର୍ବତମାନଙ୍କର ପଙ୍ଖ ଥିଲା । ସେମାନେ ଯେଉଁଠିକି ଯିବା ପାଇଁ ଚାହୁଁଥିଲେ, ଯାଇପାରୁଥିଲେ । କିନ୍ତୁ ଇନ୍ଦ୍ର ସେମାନଙ୍କର ପଙ୍ଖ କାଟି ଅଚଳ କରି ଦେଇଛନ୍ତି । ତେଣୁ ଏପରି ଅବସ୍ଥାରେ କେଉଁଠାକୁ ଯିବା ସେମାନଙ୍କ ପକ୍ଷେ ସମ୍ଭବ ନୁହେଁ ।" ଏହା ଶୁଣି ବଶିଷ୍ଠ ମୁନି କହିଲେ, "ହେ ପର୍ବତରାଜା, ଆପଣଙ୍କର ପ୍ରତ୍ୟେକ କଥା ସତ୍ୟ, କିନ୍ତୁ ମୁଁ ଜାଣିଛି ଆପଣଙ୍କର ପୁତ୍ର ନନ୍ଦୀବର୍ଦ୍ଧନଙ୍କର ଜଣେ ମିତ୍ର ଅଛନ୍ତି । ତାଙ୍କ ନାଁ ଅର୍ବୁକ । ଏବେ ମଧ୍ୟ ତାଙ୍କର ଉଡ଼ିପାରିବାର କ୍ଷମତା ଅଛି ।''

ମୁନିଙ୍କ ମୁଖରୁ ତାଙ୍କର ମହତ୍ ଉଦ୍ଦେଶ୍ୟ ବିଷୟରେ ଶୁଣି ନନ୍ଦୀବର୍ଦ୍ଧନ ବଡ଼ ପ୍ରସନ୍ନ ହେଲେ । ହିମାଳୟଙ୍କ ଆଜ୍ଞାରେ ଅର୍ବୁକ ନନ୍ଦୀବର୍ଦ୍ଧନଙ୍କୁ ସାଙ୍ଗରେ ଘେନି ଉଡ଼ିଗଲେ ଓ ବିଶାଳ ଗର୍ତ୍ତ ମଧ୍ୟରେ ଛାଡ଼ିଦେଲେ । ସେ ମଧ୍ୟ ନନ୍ଦୀବର୍ଦ୍ଧନଙ୍କ ଅନୁରୋଧରେ ସେଠାରେ ରହିଗଲେ । ଆଜି ଏହି ପବିତ୍ର ସ୍ଥାନ ଦେବତାମାନଙ୍କର ନିବାସସ୍ଥଳୀ ରୂପେ ବିରାଜିତ ।

*ଯୋଗ ଫର୍ ଲାଇଫ୍, ବିସି- ୭୪, ସେକ୍ଟର- ୧, ସଲଟ୍‌ଲେକ୍, କଲିକତା- ୬୪*

❊❊

# ପଶୁବଳି

ଶ୍ରୀ ବିଷ୍ଣୁମୋହନ

ଅଂଧ ବିଶ୍ୱାସ କରେ ନିଃଶେଷ
ନିରୀହ ସେ ପଶୁକୁଳ
ଅମୂଳକ ଏହି ମଣିଷ ଧାରଣା
ନ ମିଳେ ପୁଣ୍ୟଫଳ ।
ଆତ୍ମ ସନ୍ତୋଷ କରଇ ବିବଶ
ପଶୁବଳି ଚଢ଼ାଇଲେ
ମନର ବାସନା ହୁଅଇ ପୂରଣ
ରକତକୁ ବଢ଼ାଇଲେ ।
ଗଢ଼ିଛନ୍ତି ବିହି ସୁଦୟା ସେ' ବହି
ଯପଶୁକୁ ସୃଷ୍ଟି କରି
ଏ ପଶୁ ଜଗତ କରୁଛନ୍ତି ହିତ
ଜନତାର ସେବା କରି ।
ଦେଖାଅରେ ବଳ ହେ, କପଟୀ ଦଳ
ଯୂପକାଷ୍ଠକୁ ନେଇ
ରକତେ ପଶୁର ଅରଚ୍ଚନା କର
ଦେବୀ ମାତା ପୂଜା ପାଇଁ ।
ମାଆ କି ପିଅଇ ସନ୍ତାନ ରକ୍ତ
ଏ ଧାରଣା ଅଟେ ଭ୍ରମ
ପଶୁବଳି ଦେଇ ମଣିଷ କରଇ
ଏହିପରି ହୀନ କର୍ମ ।
ଜୀବ ଜଗତର ଶ୍ରେଷ୍ଠ ବୋଲି ନର
ଟେକି ଚାଲୁଅଛି ମଥା
ବଳି ପଶୁଟିର ବିକଳ ଚାହାଣି
ଦେଉନାହିଁ କିରେ ବ୍ୟଥା ?
ଆଇନ୍‌ଟି ଯଦି ହୋଇବ କଠୋର
ଉଠିଯିବ ଏହି ପ୍ରଥା
ସୁରକ୍ଷା ପାଇବେ ପଶୁଏ ସରବେ
ଦୂର ହୋଇଯିବ ଚିନ୍ତା ।

*ଏ/୫୮, କ୍ରିଷ୍ଣା ଗାର୍ଡେନ୍- ୨, ଖଣ୍ଡଗିରି, ଭୁବନେଶ୍ୱର- ୩୦*

---

**ଅଛି–ନାହିଁ** ତଳେ ଦିଆଯାଇଥିବା ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୭ଟି ପ୍ରଭେଦ ଅଛି । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖୋଜି ବାହାର କରନ୍ତୁ ତ ! *(ଉତ୍ତର ୪୪ ପୃଷ୍ଠାରେ)*





# ଜଳନ୍ତା ଭୂତଳ

## ଡକ୍ଟର ସନ୍ତୋଷ କୁମାର ମିଶ୍ର

ଓଡ଼ିଆରେ ଏକ ସୁନ୍ଦର ଢଗ ରହିଛି । ସେଇଟା ହେଲା–

"ବନ ପୋଡ଼ିଗଲେ ସଭିଏଁ ଜାଣନ୍ତି
ମନ ପୋଡ଼ିଗଲେ କେହି ନ ଜାଣନ୍ତି ।"

ଢଗଟି କିଏ, କାହିଁକି, କିପରି ପରିସ୍ଥିତିକୁ ନେଇ ରଚନା କରିଥିଲା, ତା'ର କୌଣସି ଖବର ନ ଥିଲେ ମଧ୍ୟ ଗୋଟିଏ କଥା ନିଶ୍ଚିତ ଯେ ସମସ୍ତଙ୍କ ସମ୍ମୁଖରେ ନିଆଁ ଜଳୁଥିବା ଘଟଣା ଜାଣିବାର କିଛି ଅସୁବିଧା ନାହିଁ, ଏପରିକି ଜଙ୍ଗଲ ମଧ୍ୟରେ; କିନ୍ତୁ ଅନ୍ତର୍ନିହିତ ମନ ଭିତରେ ନିଆଁ ସଦୃଶ ବ୍ୟଥା କଥା ସଂପୃକ୍ତ ବ୍ୟକ୍ତିଟି ଛଡ଼ା ଅନ୍ୟ କେହି ବାହାର ଲୋକ ଜାଣିବା ସମ୍ଭବ ନୁହେଁ ।

ଆଧୁନିକ ଯୁଗରେ ଅସମ୍ଭବ ବୋଲି କିଛି ନାହିଁ । ବର୍ତ୍ତମାନ ମନ କଥାକୁ ମନୋବିଜ୍ଞାନୀମାନେ ଭଲ ଭାବରେ ଠଉରାଇ ପାରି ସାନ୍ତ୍ୱନା ଦେଇପାରୁଛନ୍ତି । ଦୋଷୀ ବ୍ୟକ୍ତିଟି ଯେତେ ସତ ଲୁଚାଇଲେ ମଧ୍ୟ ଧରାପଡ଼ି ଯାଉଛି । 'ପଲିଗ୍ରାଫ୍' ମାଧ୍ୟମରେ ଆଗରୁ ଘଟଣା ସମ୍ବନ୍ଧରେ ସ୍ଥିରୀକୃତ କିଛି ପ୍ରଶ୍ନ-ଉତ୍ତର ସାହାଯ୍ୟରେ ମନୋବିଜ୍ଞାନୀମାନେ ଦୋଷୀକୁ ଠିକ୍‌ଭାବରେ ଧରିବାରେ ସାହାଯ୍ୟ କରୁଛନ୍ତି ।

ବଣରେ ନିଆଁ ଲାଗିବା ସଙ୍ଗେ ସଙ୍ଗେ ସେଠାକାର ବାସିନ୍ଦା କିମ୍ବା ଦେଖଣାହାରୀଙ୍କ ପାଖରୁ ଖବର ପାଇ ନିଆଁଲିଭାଳି ଦଳ ସେଠାରେ ପହଞ୍ଚି ନିଆଁକୁ ଆୟତ୍ତ କରି ବହୁ ଧନଜୀବନ ସହ ଜଙ୍ଗଲର ଜୀବଜନ୍ତୁ, ବିଶେଷକରି ଉଦ୍ଭିଦ ଜଗତକୁ ରକ୍ଷା କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରି ଫଳପ୍ରଦ ହେଉଛନ୍ତି । ଏବେ ସମସ୍ତେ ଅନୁଭବ କଲେଣି ଯେ ଉଦ୍ଭିଦ ହିଁ ଜୀବନ । ପ୍ରଦୂଷଣର ଭାରସାମ୍ୟ ରକ୍ଷା କରିବା, ଜଳବାୟୁର ଅନିଶ୍ଚିତତାରୁ ରକ୍ଷା ପାଇବା ପାଇଁ ଏବଂ ପ୍ରାଣୀଜଗତର ଖାଦ୍ୟ ପାଇଁ ଉଦ୍ଭିଦଜଗତର ସ୍ଥିତି ନିତ୍ୟାନ୍ତ ଆବଶ୍ୟକ ।

ପୃଥିବୀର ଗଠନ ପ୍ରଣାଳୀ ପରେ ପ୍ରକୃତି ମଧ୍ୟ ଉଦ୍ଭିଦ ଜଗତର ପ୍ରାଧାନ୍ୟ କଥା ଅନୁଭବ କରିଥିଲା । ଭୂପୃଷ୍ଠରେ ଯେତେବେଳେ ଶିଉଳି, ଛୋଟ ଗୁଳ୍ମ ଓ ପ୍ରକାଣ୍ଡକାୟ ଉଦ୍ଭିଦ ସୃଷ୍ଟି ହେଲେ, ସେତେବେଳେ ପ୍ରକୃତି ବୋଧହୁଏ ଅନୁମାନ କରିନେଲା ଯେ ଭବିଷ୍ୟତରେ ମଣିଷ ବୋଲି ଯେଉଁ ପ୍ରାଣୀ ବିବର୍ତ୍ତନ ପ୍ରଣାଳୀ ଭିତରେ ସୃଷ୍ଟି ହେବାକୁ ଯାଉଛି, ତା'ପାଇଁ ଭବିଷ୍ୟତରେ ଯେଉଁ ଶକ୍ତି ବା ଉର୍ଜ୍ଜାର ଆବଶ୍ୟକତା ରହିଛି, ତାହା ଏହି ଉଦ୍ଭିଦ ମଧ୍ୟରେ ଲୁକ୍କାୟିତ ଅବସ୍ଥାରେ ରହିଛି । ସୂର୍ଯ୍ୟକିରଣରୁ ଶକ୍ତିକୁ ସଂଗ୍ରହ କରି ଉଦ୍ଭିଦ ମଧ୍ୟରେ ଆଲୋକ ସଂଶ୍ଲେଷଣ (Photosynthesis) ପ୍ରକ୍ରିୟାକରଣ ମାଧ୍ୟମରେ ଅଙ୍ଗାର (Carbon) ବୋଲି ଯେଉଁ ମୌଳିକ ଉପାଦାନ (Element) ଟି ଉଦ୍ଭିଦ ମଧ୍ୟରେ ସଞ୍ଚିତ ହୋଇରହିଲା, ତାହା ମାନବ ସମାଜ ପାଇଁ ପରବର୍ତ୍ତୀ ସମୟରେ ଆବଶ୍ୟକ ପଡ଼ିବ ବୋଲି ମନେକରି ଉଦ୍ଭିଦଗୁଡ଼ିକୁ ଭୂତଳେ ସଞ୍ଚିତ କରି ପଥର କୋଇଲାରେ ପରିଣତ କରିଦେଲା ।

ବର୍ତ୍ତମାନ ପୃଥିବୀର ଯେତେସବୁ ଜାଗାରେ ଏହି ପଥର କୋଇଲା ବା କୋଇଲା ରହିଛି, ତାହା ଅତି ମୂଲ୍ୟବାନ୍ ପଦାର୍ଥ ହିସାବରେ ଗଣାଯାଉଅଛି; ଯଦିଓ ସହଜ, ସୁବିଧା ଓ ପ୍ରଚୁର ପରିମାଣରେ ମିଳୁଥିବା ଯୋଗୁଁ ଅନ୍ୟାନ୍ୟ ଖଣିଜ ପଦାର୍ଥ ଅପେକ୍ଷା ଏହା ଶସ୍ତା । ବର୍ତ୍ତମାନ କୋଇଲାକୁ ଖୋଲା ଖଣି ବା ଭୂତଳ ଖଣିରୁ ଉତ୍ତୋଳନ

କରାଯାଉଅଛି । ଅନ୍ୟାନ୍ୟ ଖଣିଜ ସଂପଦର ଖଣିଗୁଡ଼ିକ ଅପେକ୍ଷା କୋଇଲା ଖଣିରେ ଅଧିକ ଅସୁବିଧା ଓ ବିପଦ ରହିଛି । ସେହିସବୁ ବିପଦ ଭିତରୁ ଖୋଲା କୋଇଲା ଖଣି (Open cast mining) କିମ୍ବା ଭୂତଳ କୋଇଲା ଖଣି (Underground mine) ରେ ନିଆଁ ଲାଗିବା ଏକ ସାଧାରଣ ଘଟଣା ହେଲେ ମଧ୍ୟ ମାନବ ସମାଜର ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ସମସ୍ୟା ଭାବରେ ଏହା ଏକ ଜାତୀୟ ସମସ୍ୟା କହିଲେ ଅତ୍ୟୁକ୍ତି ହେବନାହିଁ ।

ମନ ପୋଡ଼ିଯିବା କଥାକୁ ଯେପରି ମନୋବିଜ୍ଞାନୀମାନେ ଜାଣିପାରୁଛନ୍ତି, ଠିକ୍ ସେଇଭଳି ଆଧୁନିକ ଯୁଗରେ ଭୂ-ବିଜ୍ଞାନୀମାନେ ଭୂତଳ କୋଇଲା ଖଣିରେ ନିଆଁ ଲାଗିଥିବା କଥାକୁ ଠଉରାଇ ସେ ବିଷୟରେ ଅନେକ ତଥ୍ୟ ହାସଲ କରିପାରିଛନ୍ତି, ତାହା ହେଲା 'ଜଳନ୍ତା ଭୂତଳ' ।

କୋଇଲା କ୍ଷେତ୍ରରେ ନିଆଁ ଲାଗିବା ସାଧାରଣ କଥା; କିନ୍ତୁ ଅସାଧାରଣ କଥାଟି ହେଉଛି, ଭୂଇଁ ତଳେ ରହିଥିବା କୋଇଲା ସ୍ତରଗୁଡ଼ିକରେ ନିଆଁ ଜଳିବା ଲାଗି ରହିଛି ବହୁତ ଦିନ ଧରି । ଆଜି ପର୍ଯ୍ୟନ୍ତ ଯେଉଁସବୁ ତଥ୍ୟ ସଂଗୃହୀତ ହୋଇଛି, ତାହା ସଂକ୍ଷେପରେ ନିମ୍ନରେ ପ୍ରକାଶ କରାଗଲା ।

ଆମ ରାଜ୍ୟ ଓଡ଼ିଶାରେ ରହିଥିବା ତାଳଚେର ଓ ଇବ୍ ଭ୍ୟାଲି କୋଇଲା କ୍ଷେତ୍ରରେ ନିଆଁ ଦେଖାଦେବା ସାଧାରଣ କଥା । ବିଶେଷତଃ ଖରାଦିନେ କୋଇଲା ଗଚ୍ଛିତ ଜାଗାରେ ଏଠିସେଠି ନିଆଁ ଲାଗି ଧୂଆଁ ବାହାରୁଥିବା ଦୃଶ୍ୟ ସେଠାକାର ବାସିନ୍ଦାମାନଙ୍କର ଏକ ସାଧାରଣ କଥା ।

ଏହି ଘଟଣା ଆଧାରରେ ଦେବାଦେବୀଙ୍କ ଉପସ୍ଥିତି ବା ଆଜ୍ଞାକୁ ଯୋଡ଼ାଯାଇ ବହୁ କାହାଣୀ ରହିଥିବାର ନଜିର ରହିଛି ।



ଆମ ପଡ଼ୋଶୀ ରାଜ୍ୟ ଝାଡ଼ଖଣ୍ଡରେ ଝରିଆ କୋଇଲା କ୍ଷେତ୍ର ଆମ ଦେଶର କୋଇଲା ସମ୍ପତ୍ତିର ମେରୁଦଣ୍ଡ ବୋଲି କୁହାଯାଏ । ଝରିଆ କୋଇଲା କ୍ଷେତ୍ରର ଅତି ଉଚ୍ଚମାନର କୋଇଲା ଲୌହ ଉତ୍ପାଦନ ପାଇଁ ବ୍ୟବହୃତ ହୋଇଥାଏ । ପ୍ରତିବର୍ଷ ଏହି ଧରଣର କୋଇଲାର ଆବଶ୍ୟକତା ପୂରଣ ପାଇଁ ବର୍ଷକୁ ପ୍ରାୟ ୪ ବିଲିୟନ୍ ଡଲାର ଖର୍ଚ୍ଚ ହେଉଛି ବାହାର ଦେଶରୁ କୋଇଲା ଆମଦାନୀ କରିବା ପାଇଁ । ଏହି କୋଇଲା ଖଣିରେ (୧୯୧୬) ଗଲା ୯୯ ବର୍ଷ ଧରି ଭୂତଳ କୋଇଲା ସ୍ତରରେ ନିଆଁ ଲାଗି ରହିଥିବା ଜଣାପଡ଼ିଛି । ଝରିଆ କୋଇଲା ସହରଟି ଏକ ଉତ୍ତପ୍ତ ଭାଟି ଉପରେ ଅବସ୍ଥିତ ବୋଲି କହିଲେ ଭୁଲ୍ ହେବନାହିଁ । ସହରଟିରେ ଅଧିକାଂଶ ସମୟରେ ଧୂଆଁ ଭର୍ତ୍ତି ହୋଇ ରହୁଥିବାରୁ ସ୍ଥାନୀୟ ଲୋକମାନେ ଅନେକ ଶ୍ୱାସଜନିତ ରୋଗରେ ଆକ୍ରାନ୍ତ ହେଉଛନ୍ତି । ଝରିଆ କୋଇଲା କ୍ଷେତ୍ରର ଉତ୍ପତ୍ତି ଓ ତତ୍‌ସମ୍ବନ୍ଧୀୟ ଘଟଣାବଳୀ ଲେଖିବସିଲେ ଗୋଟାଏ ବହି ହେବ ।

ଗଲା ମେ ମାସ ୩୧ ତାରିଖ (୩୧.୦୫.୨୦୧୫) ରେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ସେହି ସହରାଞ୍ଚଳରୁ ପ୍ରାୟ ଏକଲକ୍ଷ ଲୋକଙ୍କୁ ଅନ୍ୟ ଏକ ଜାଗାରେ ବାସସ୍ଥାନ ଯୋଗାଇବା ସଙ୍ଗେ ସଙ୍ଗେ ଲାଗି

ରହିଥିବା ନିଆଁକୁ ଆୟତ୍ତ କରିବା ଦିଗରେ ପଦକ୍ଷେପ ନିଆଯିବ ବୋଲି ସର୍ବସାଧାରଣରେ ପ୍ରକାଶ କରିଛନ୍ତି ।

ଭାରତରେ କୋଇଲା ଉତ୍ତୋଳନ କାର୍ଯ୍ୟକ୍ରମ ଆରମ୍ଭ ହେଲା ବଙ୍ଗଳା ରାଜ୍ୟର ରାଣୀଗଞ୍ଜ ଠାରେ ୧୭୩୪ ମସିହାରେ । ପ୍ରାୟ ଝରିଆ କୋଇଲା ଖଣିର ସମସାମୟିକ ଖଣି ଭିତରେ ମନକୁ ମନ ନିଆଁ ଲାଗିବା କଥାଟି ଜଣାପଡ଼ିଲା ୧୮୬୫ ମସିହାରେ । କୋଇଲାରେ ମନକୁ ମନ ନିଆଁ ଲାଗିବା (Spontaneous Combustion) କଥାଟି କୋଇଲା ବିଜ୍ଞାନ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ବିଷୟ ।

ଏତଦ୍‌ବ୍ୟତୀତ ବର୍ତ୍ତମାନ ସୁଦ୍ଧା ଆମ ଦେଶରେ କୋଇଲା କ୍ଷେତ୍ରରେ ନିଆଁ ଲାଗି ରହିଥିବା ଅଞ୍ଚଳଗୁଡ଼ିକ ହେଲା– ଆସାମର ମାରଗାରୀତା, ଆନ୍ଧ୍ରପ୍ରଦେଶର ସିଙ୍ଗାରେଣୀ କୋଇଲା କ୍ଷେତ୍ରର ଭେଙ୍କେଟଶ ଖଣି, ମହାରାଷ୍ଟ୍ରର ଚନ୍ଦ୍ରପୁରାର ମହାକାଳୀ କୋଇଲା ଖଣି ଇତ୍ୟାଦି ଇତ୍ୟାଦି ।

ଚୀନ୍ ଦେଶରେ ପ୍ରତିବର୍ଷ ପ୍ରାୟ ୨.୫ ବିଲିୟନ ଟନ୍ କୋଇଲା ଉତ୍ପାଦନ ହେଉଥିବାବେଳେ ପ୍ରାୟ ୧୦–୧୦୦ ମିଲିୟନ୍ ଟନ୍‌ର କୋଇଲା ଏହି ନିଆଁ ଜଳିବା ଯୋଗୁଁ ନଷ୍ଟ ହୋଇଥାଏ । ଚୀନ୍ ଦେଶରେ ପ୍ରାୟ ଶତାଧିକ ସ୍ଥାନରେ ଭୂତଳ କୋଇଲା ଖଣିରେ ନିଆଁ ଲାଗି ରହିଥିବା ଉଲ୍ଲେଖ ରହିଛି । ସେହି ଜାଗାଗୁଡ଼ିକ ମଧ୍ୟରୁ ଜିନ୍‌ଜିଆଙ୍ଗ, ମଙ୍ଗୋଲିଆର ମଧ୍ୟବର୍ତ୍ତୀ ସ୍ଥାନ ଓ ନିଙ୍ଗଜିଆ ଉଲ୍ଲେଖଯୋଗ୍ୟ ।

ଜର୍ମାନୀ ଦେଶରେ କୋଇଲାରେ ନିଆଁ ଲାଗିବା କଥା ୧୪୭୬ ମସିହାଠାରୁ ଆରମ୍ଭ ହୋଇଥିଲା । ୧୮୬୦ ମସିହାରେ ଏହାକୁ କିଛି ପରିମାଣରେ ଆୟତ୍ତ କରାଯାଇଥିଲେ ମଧ୍ୟ ତାଙ୍କ ଲିଗ୍‌ନାଇଟ୍ କୋଇଲା ଖଣିରେ ଲାଗି ରହିଥିବା ନିଆଁ ଭୂପୃଷ୍ଠକୁ ଉଠିଆସି ଏ ପର୍ଯ୍ୟନ୍ତ ମଧ୍ୟ ଲାଗି ରହିଛି ।

ଆମେରିକାର ଖୋଲା ଖଣି ଫେଡେରାଲ୍ ଅଫିସ ଖବର ଅନୁଯାୟୀ ୧୯୯୯ ମସିହାରେ ପ୍ରାୟ ୧୫୦ ଜାଗାରେ ନିଆଁ ଲାଗିଥିବା କଥାରୁ ଚିହ୍ନଟ କରାଯାଇଛି । କେବଳ ପେନ୍‌ସିଲ୍‌ଭାନିଆରେ ରହିଛି ୪୫ଟି ନିଆଁ ଲାଗିଥିବା ଅଞ୍ଚଳ । ଆମେରିକାର କଲମ୍ବିଆ ରାଜ୍ୟର ସେଣ୍ଟ୍ରାଲିଆଠାରେ ଭୂତଳ କୋଇଲା ଖଣିରେ ୧୯୬୨ ମସିହାରେ ନିଆଁ ଲାଗିଥିବା କଥା ଜଣାପଡ଼ିବା ପରେ ପରେ ତାହାର ଦ୍ୱାରଦେଶକୁ ବନ୍ଦ କରିଦିଆଗଲା ।

ଅଗ୍ନି ନିର୍ବାପନର ସମସ୍ତ ବ୍ୟବସ୍ଥା ପରେ ଦୁର୍ଭାଗ୍ୟବଶତଃ ଏକମାତ୍ର ବାଟକୁ ବନ୍ଦ କରାଯାଇ ନ ଥିବାରୁ ତାହା ଏପର୍ଯ୍ୟନ୍ତ ମଧ୍ୟ ନିଆଁ ଲାଗିଥିବା ଅବସ୍ଥାରେ ରହିଛି । ଏଠାରୁ ଆସ୍ତେ ଆସ୍ତେ ଲୋକମାନଙ୍କୁ ନିଆଯାଇ ଏହାକୁ ଏକ ଭୂତର ସହର ବା Ghost Town ନାମରେ ଅଭିହିତ କରାଯାଇଛି । ବର୍ତ୍ତମାନ ଏହା ପେନ୍‌ସିଲ୍‌ଭାନିଆର ସବୁଠାରୁ କମ୍ ଜନବସତି ଥିବା ମ୍ୟୁନିସ୍‌ପାଲିଟି ଅଞ୍ଚଳ, ଯାହା ଏକଦା ଏକ କୋଇଲା ଉତ୍ପାଦନ ଅଞ୍ଚଳ ଭାବରେ ପରିଚିତ ଥିଲା ।

ପୃଥିବୀର ସର୍ବପୁରାତନ ଭୂତଳ କୋଇଲା ଜଳିବା କଥାଟି ପ୍ରାୟ ୬,୦୦୦ ବର୍ଷ ତଳର । ଅର୍ଥାତ୍ ବର୍ତ୍ତମାନ ସେଠାରେ ନିଆଁ ଜଳିବା କାମଟି ଲାଗି ରହିଛି । ପେନ୍‌ସିଲ୍‌ଭାନିଆ କୋଇଲା ଖଣିର ୧୫୩ ବର୍ଷର ପୁରାତନ ନିଆଁ ଲାଗିବା ଘଟଣାଟି ଏହା ତୁଳନାରେ ସାମାନ୍ୟମାତ୍ର । ଅଷ୍ଟ୍ରେଲିଆର ଦକ୍ଷିଣ ଦିଗରେ ରହିଥିବା ଖଣିରେ ନିଆଁ ଲାଗି ରହିଛି, ଯାହାକି ଜ୍ୱଳନ୍ତ ପାହାଡ଼ ନାମରେ ପ୍ରସିଦ୍ଧ । ଏହା ତଳେ ରହିଥିବା କୋଇଲାଗୁଡ଼ିକ ଜଳୁଥିବାରୁ ଗନ୍ଧକ ଧୂଆଁ ଉତ୍ତାପ ଓ ଅନ୍ୟାନ୍ୟ ବିଷାକ୍ତ

ବାଷ୍ପ ବାହାରି ପାହାଡ଼ଟିକୁ ଏକ ଦନ୍ତୁରିତ ପଥୁରିଆ ଅବସ୍ଥାରେ ରଖିଛି । କୋରଡ଼ ଭଳି ରାସ୍ତାମାନ ଭିତରକୁ ରହିଲା ପରି ଜଣାପଡୁଛି । ସେଠାରେ ନିଆଁ କିପରି ଲାଗିଲା, ତାହା ଏ ପର୍ଯ୍ୟନ୍ତ ମଧ୍ୟ ରହସ୍ୟାବୃତ । ସ୍ୱତଃପ୍ରବୃତ୍ତ କୋଇଲା ଜଳିବା, ବିଜୁଳି ଦ୍ୱାରା ନିଆଁ ଲାଗିବା କିମ୍ବା ସେଠାରେ ଏକଦା ରହୁଥିବା ଆଦିମ ଅଧିବାସୀଙ୍କ ଦ୍ୱାରା ନିଆଁ ଲାଗିଥିବା କଥା ସନ୍ଦେହ କରାଯାଉଅଛି ।

କୋଇଲା ଖଣିରେ ନିଆଁ ଲାଗିବା କାରଣଗୁଡ଼ିକୁ ସଂକ୍ଷେପରେ ଭୂତାତ୍ତ୍ୱିକ କାରଣ, ଖଣି ଖନନ କାର୍ଯ୍ୟଜନିତ କାରଣ ଓ କୋଇଲା ସ୍ତର (କୋଲ ସିମ୍) ସଂପୃକ୍ତ କାରଣ ଇତ୍ୟାଦିରେ ବିଭକ୍ତ କରାଯାଇଅଛି ।

ଭୂତାତ୍ତ୍ୱିକ କାରଣଗୁଡ଼ିକ ଭିତରେ କୋଇଲା ସ୍ତରର ମୋଟେଇ, ସ୍ତରର କ୍ରମନିମ୍ନତାର ମାତ୍ରା (Scangra-dient), ଗହ୍ୱରଗୁଡ଼ିକର ସ୍ୱଭାବ, ଭୂଚ୍ୟୁତି (Fault), କୋଇଲା ବଳପୂର୍ବକ କାଟିବାଜନିତ ଓ କୋଇଲା ଚୂର୍ଣ୍ଣନୀୟଗୁଣଗୁଡ଼ିକ ଅନ୍ତର୍ଗତ ।

ଖଣି ଖନନ କାର୍ଯ୍ୟ ଭିତରେ ଖଣି ଖୋଳିବା ପଦ୍ଧତି, ଖୋଳାକାର୍ଯ୍ୟରେ ଆଗକୁ ଆଗକୁ ମାଡ଼ିଯିବାର କାରଣ, ଭୂତଳ ଖଣିରେ ରହିଥିବା ଖୁଣ୍ଟିଗୁଡ଼ିକର ଅବସ୍ଥା, ଉପରଅଂଶର ସ୍ଥିତି, ଖଣିଖୋଳା ପରେ ସେଥିମଧ୍ୟରେ ଭର୍ତ୍ତି କରାଯାଇଥିବା ପଦାର୍ଥ, ଏକସମୟରେ ଏକାଧିକ କୋଇଲା ସ୍ତରର ଖନନ, ବ୍ୟବହୃତ ଯନ୍ତ୍ରଗୁଡ଼ିକରୁ ଉତ୍ତାପ ସୃଷ୍ଟି ହେବା, ବାୟୁ ଚଳାଚଳଜନିତ ଚାପ ଓ ଆର୍ଦ୍ରତା ପରିବର୍ତ୍ତନ କାରଣମାନ ଅନ୍ତର୍ଭୁକ୍ତ ।

କେବଳ କୋଇଲା ସ୍ତରସମୂହର କାରଣଗୁଡ଼ିକ ହେଲା– ସ୍ତରଟିର ମୋଟେଇ, କେଉଁ ଶ୍ରେଣୀର କୋଇଲା, ଅଣୁବୀକ୍ଷଣ ଯନ୍ତ୍ର ଦ୍ୱାରା କୋଇଲା ବର୍ଣ୍ଣନା କରିବା ସ୍ୱଭାବ ଭିତରୁ କେତେକ ସ୍ୱଭାବ, ସଲଫର୍ ମିନେରାଲ୍, ଅମ୍ଳଜାନ ସହିତ ମିଶ୍ରଣ (Oxidation) ଓ ଅଣୁଜୀବମାନଙ୍କ ପ୍ରଭାବ (Bacterial effect) ଇତ୍ୟାଦି ।

କୋଇଲାରେ ସ୍ୱତଃପ୍ରବୃତ୍ତ ନିଆଁ ଲାଗିବା କଥା ହେଉ କିମ୍ବା ଲୋକମାନଙ୍କ ଅସାବଧାନତା ଯୋଗୁଁ ହେଉ, ଥରେ ଗୋଟିଏ ଜାଗାରେ ନିଆଁ ଲାଗିଗଲେ ତାକୁ ସଂପୂର୍ଣ୍ଣ ନିର୍ବାପିତ କରିବା ବର୍ତ୍ତମାନ ସମସ୍ତଙ୍କର କାମ୍ୟ । ଏଥିପାଇଁ ପୋଡ଼ିଯାଉଥିବା ମନକୁ କିଏ ସାନ୍ତ୍ୱନା ଦେବ ?

ଦେଶ ହେଉ କି ବିଦେଶ ହେଉ
କୋଇଲା ନିଆଁ ଜବତ ହେଉ
ନୁହେଁ ସେ ଖାଲି ଜଳନ୍ତା ଭୂତଳ
ଜୀବ ଜଗତର ବିନାଶ କଳ ।

*ଏଚ୍.ଆଇ.ଜି. - ୨୧/୪, ଓ.ଏସ୍.ଏଚ୍.ବି. କଲୋନୀ, ଫେଜ୍-୧, ଚନ୍ଦ୍ରଶେଖରପୁର, ଭୁବନେଶ୍ୱର - ୭୫୧୦୧୬* ✻✻



୧୮୫୦ ମସିହାରେ ଭାରତୀୟ ସେନା ତାଙ୍କର ସେନା ପୋଷାକ ସହିତ ।



# ଭାରି ମନେପଡ଼େ......

ଶ୍ରୀ ପୀତାମ୍ବର ମିଶ୍ର

ଆମ ଗାଁ ମୁଣ୍ଡେ ନଈର ପଠା
ତା'ପାଖେ ଗହଳ ଆମ୍ବର ତୋଟା
ପୂରୁବ ନଭରେ ଉଇଁ ସୂରୁଯ
ବୁଣିଦିଏ ନାଲି ରଂଗ ମୁରୁଜ
ପୂଜକ କଣ୍ଠରୁ ଶୁଭେ ଓଁକାର
ସୁବାସ ଧୂପରେ ବାସେ ମନ୍ଦିର
ସକାଳେ ବାଜଇ ଆରତି ଘଣ୍ଟା
ଭାରି ମନେପଡ଼େ ମୋ ପିଲାଦିନର
ମାଟି ସିଲଟର ମୁଣ୍ଡୁଳା କଟା ।୦।

କାନକୋଳି ଡାଳେ ଶୁଆଁଳ ଲଟା
କୋଳି ତୋଳି ହାତେ ଭୁକିଛି କଣ୍ଟା
ଅମା ବିଦ୍ୟାଳୟ କେଡ଼େ ସୁନ୍ଦର
ମୋ ପାଇଁ ଅଟଇ ପୂଜା ମନ୍ଦିର
ଗୁରୁଜୀ ଆକଟ "କରନା ମଠ
ବଡ଼ ଚାଟ ହେବୁ ପଢ଼ିଲେ ପାଠ
ଭଲ କାମେ ସଦା ମନକୁ ଖଟା" ।
ଭାରି ମନେପଡ଼େ ମୋ ପିଲାଦିନର
ମାଟି ସିଲଟର ମୁଣ୍ଡୁଳା କଟା ।୧।

ବାପାଙ୍କ ଶାସନ ଜେଜେଙ୍କ ଥଟ୍ଟା
ଜେଜେ ମାଆ ଗପ କେତେ ଯେ ମିଠା
ମାଆର ସେନେହ କେଡ଼େ ମଧୁର
ପାରିବିନି ଶୁଝି ଋଣ ତାହାର
ତାର ହାତେ ବଢ଼ା ସଜ ପଖାଳ
ଖାଉଥିଲି ମାଗି ହୋଇ ବିକଳ
ବଡ଼ିଚୁରା ରାଇ ଆମ୍ବୁଲ ଖଟା
ଭାରି ମନେପଡ଼େ ମୋ ପିଲାଦିନର
ମାଟି ସିଲଟର ମୁଣ୍ଡୁଳା କଟା ।୨।

ଆଷାଢ଼ ମାସର ବରଷା ଛିଟା
ନାହିଁ ଆଜି ଢଗଢମାଳି ଛଟା
ଗୁରୁଜନଙ୍କର ଆଦେଶ ପାଳି
ଚଳୁଥିଲେ ସର୍ବେ ନ ଥିଲା କଳି
ଫୁଲଫଳେ ଭରା କ୍ଷେତ କିଆରି
ଦେଖିଦେଲେ ଆଖି ଲାଗେ ସବୁରି
କେବେ କାହା ମନ ନ ଥିଲା ଫଟା ।
ଭାରି ମନେପଡ଼େ ମୋ ପିଲା ଦିନର
ମାଟି ସିଲଟର ମୁଣ୍ଡୁଳା କଟା ।୩।

ପଥର ଶିଳର ଚାଉଳ ବଟା
ଚକୁଳି ପିଠାରେ ଛେନା ଚକଟା
ବାର ମାସେ ତେର ପରବ ପାଳି
ପାଳନ୍ତି ସକଳେ ଶରଧା ଢାଳି
ଠାକୁରାଣୀ ଦାଣ୍ଡେ ଏକାଠି ବସି

ଭୋଜି ଭାତ ଖାଇ ହୁଏ ମୁଁ ଖୁସି
ନାଚ ଦେଖି ନାଚେ ହଲାଇ ଅଣ୍ଟା ।
ଭାରି ମନେପଡ଼େ ମୋ ପିଲା ଦିନର
ମାଟି ସିଲଟର ମୁଣ୍ଡୁଳା କଟା ।୪।
ସମୟର ସୁଅ ଅଣଲେଉଟା
ଜୁଆର ଶେଷରେ ଆସଇ ଭଟ୍ଟା
ମଠଘର ବର ଗଛର ମୂଳେ
ଖେଳୁଥିଲି ଦୋଳି ତାହାରି ଡାଳେ
ସାଥୀ ସହପାଠୀ ସଙ୍ଗାତ ମେଳେ
ହଜଇ ନିଦାଘ ତା' ଛାଇ ତଳେ
ସେହି ଗଛ ଆଜି ହୋଇଛି ଥୁଣ୍ଟା
ଭାରି ମନେପଡ଼େ ମୋ ପିଲା ଦିନର
ମାଟି ସିଲଟର ମୁଣ୍ଡୁଳା କଟା ।୫।
ଜନନୀ ଜନମ ଭୂଇଁର ଭିଟା
ବୋଲିଦେଲା ମନେ ମମତା ଅଠା,
ତା'ର ଧୂଳି, ମାଟି, ଗୋଡ଼ି ସାଥିରେ
ବିତାଇବି ଦିନ ନିତି ପ୍ରୀତିରେ
ଜଳିଥିଲା ଯହିଁ ଏନ୍ତୁଡ଼ି ନିଆଁ
ସେଇଠି ଲିଭିବ ମୋ ଚିତା ଧୂଆଁ
ସେହି ମୋର ସୃଷ୍ଟି ସେହି ମୋ ସ୍ରଷ୍ଟା ।
ଭାରି ମନେପଡ଼େ ମୋ ପିଲା ଦିନର
ମାଟି ସିଲଟର ମୁଣ୍ଡୁଳା କଟା ।୬।

*ବାଗଦାବିନାୟକପୁର, ବାସୁଦେବପୁର, ଭଦ୍ରକ* ❊❊

---

'ସାଧାରଣଜ୍ଞାନ ପରୀକ୍ଷା'ର ଉତ୍ତର -
୧ । ହିମାଚଳ ପ୍ରଦେଶ, ୨ । ଅସ୍‌ଲମ୍ ସେର୍ ଖାନ୍, ୩ । ୧୯୯୭, ୪ । ବିଶ୍ୱାମିତ୍ର ନଦୀ, ୫ । ୩୧ ଅକ୍ଟୋବର ୧୯୮୪, ୬ । ସେନ୍ ୱାର୍ଣ୍ଣେ, ୭ । ୧୯୭୬, ୮ । ଜି. ଏମ୍. ସି. ବାଲାଯୋଗି, ୯ । ଅଶୋକା ହୋଟେଲ୍

## ଲୁଣ କମ ଖାଇବା ଉଚିତ

ସ୍ପେନ୍‌ର ପ୍ରସିଦ୍ଧ ପାଚକଙ୍କ ମତରେ ଲୁଣ ଏକମାତ୍ର ଖାଦ୍ୟବସ୍ତୁ ଯାହା ଗ୍ୟାସୋନୋମିର କାରଣ । ଲୁଣକୁ ନେଇ ଆମ ଭାଷାରେ ବହୁ ଲୋକବାଣୀ ଚଳେ । 'ଲୁଣ ଖାଏ ହାଣ୍ଡି, ଚିନ୍ତା ଖାଏ ଗଣ୍ଡି' । 'ଯାହାର ଖାଇବ ଲୁଣ, ତାହାର ଗାଇବ ଗୁଣ' । 'ମିଠା କୋମଳ ବଚନ ନ ଥିଲେ, ଅଲଣା କଥା ହୋଇଯାଏ' । ରୋଷେଇରେ ଲୁଣର ବଡ଼ ଆବଶ୍ୟକତା । କିନ୍ତୁ ଲୋକବାଣୀରେ ଯା'ଠୁଁ ବଡ଼ କଥାଟି ଚଳେ- 'ବେଶୀ ଖାଅ ଲୁଣ, ହାଡ଼ ଖାଏ ଘୂଣ' । ଏ କଥାଟି ଏବେ ଖୁବ୍ ସତ୍ୟ ବୋଲି ପ୍ରମାଣିତ ହେଲାଣି । ଆମେ ଯେଉଁ ପନିପରିବା, ଡାଲି, ଭାତ ଆଦି ଖାଉ, ସେଥିରେ ଯେତିକି ପରିମାଣରେ ପ୍ରକୃତି ଲୁଣ ସଂଚିଥାଏ, ସେତିକି ସ୍ୱାସ୍ଥ୍ୟ ପାଇଁ ଯଥେଷ୍ଟ । ତା' ଉପରେ ମୁଢ଼ି, ଆମ୍ବୁଲ, ଚଟଣି ପ୍ରଭୃତି ଛଡ଼ା ଲୁଣ ଆମେ ଖାଇଥାଉ । ସାଧାରଣ ଭାବରେ ଦେହ ଲୋଡ଼େ ମାତ୍ର ପାଞ୍ଚଗ୍ରାମ ଲୁଣ । ତହିଁରୁ ଅଧିକ ହେଲେ ବିପଦ ଆସେ । ଖାଦ୍ୟବିତ୍‌ମାନେ କହନ୍ତି ଅଧିକ ଲୁଣ ଖାଇବା ଯୋଗୁଁ ଉଚ୍ଚ ରକ୍ତଚାପ, କିଡ୍‌ନି ଓ ପରିସ୍ରା ରୋଗ, ଜଳହୀନତା, ହାଡ଼ରୋଗ, ପେଶି ଓ ହୃଦଯନ୍ତ୍ରର କ୍ଷତି, ମୋଟାପଣ, ପେଟ କ୍ୟାନସର ପ୍ରଭୃତି ସୃଷ୍ଟି ହୁଏ । ସର୍ବେକ୍ଷଣ କହେ– ତିନିରୁ ପାଞ୍ଚ ଲକ୍ଷଲୋକ ଅଧିକ ଲୁଣ ଖାଇବା ଯୋଗୁଁ ଉପରଲିଖିତ ରୋଗରେ ଭାରତରେ ବର୍ଷକୁ ମରିଥା'ନ୍ତି । ଏବେ ଭାରତରେ କେଉଁ ରାଜ୍ୟର ଲୋକେ ଦୈନିକ କେତେ ଲୁଣ ଖାଆନ୍ତି, ସର୍ବେକ୍ଷଣରୁ ଦେଖାଯାଉ- ଓଡ଼ିଶା ବ୍ୟକ୍ତି ପିଛା ଦିନକୁ ୧୧.୭୭ଗ୍ରାମ, ଅରୁଣାଚଳ- ୧୧.୧୭, ଆନ୍ଧ୍ରା- ୧୦.୭୩, ଜାମ୍ମୁ ଓ କାଶ୍ମୀର- ୧୦.୧୭, ପଶ୍ଚିମବଙ୍ଗ- ୧୦.୮ଗ୍ରାମ...

**--ଡ. ଶୁଭେଂଦ୍ରମୋହନ ଶ୍ରୀଚଂଦନ ସିଂ**

# ବୁଦ୍ଧି ପରୀକ୍ଷା

ଶ୍ରୀ ସହଦେବ ସାହୁ

୧ । ଅଭୟ ବିନୋଦଠାରୁ ଡେଙ୍ଗା; କିନ୍ତୁ ଚୈତନ୍ୟଠାରୁ ଗେଡ଼ା । ଧରଣୀ ଅଭୟଠାରୁ ଡେଙ୍ଗା, କିନ୍ତୁ ଚୈତନ୍ୟଠାରୁ ଗେଡ଼ା । ମଧୁ ବିନୋଦଠାରୁ ଡେଙ୍ଗା, କିନ୍ତୁ ଅଭୟଠାରୁ ଗେଡ଼ା । ସବୁଠାରୁ ଡେଙ୍ଗା କିଏ ?

୨ । ଜଣେ ଛାତ୍ର ଗୋଟିଏ ସଂଖ୍ୟାକୁ ୨ରେ ଗୁଣିବା ବଦଳରେ ୨ରେ ହରିଦେଲା ଓ ଫଳ ପାଇଲା ୨ । ପ୍ରକୃତ ଫଳ ସେ କେତେ ପାଇଥା'ନ୍ତା ?

୩ । ଗୋଟିଏ ପିଲାର ବଡ଼ ଅଦ୍ଭୁତ ଖିଆଲ ହେଲା ଯେ ସେ ଏଥର ସ୍କୁଲ୍‌କୁ ଯିବାବେଳେ ଆଗକୁ ପାଦ ପକାଇଲେ ପଛକୁ ଦୁଇପାଦ ପକାଇବ । ସେ କିପରି ସ୍କୁଲ୍‌ରେ ପହଞ୍ଚିବ ? (କ) ସ୍କୁଲକୁ ମୁହଁ କରି, (ଖ) ଘରକୁ ମୁହଁ କରି, (ଗ)ଜଣେ ସାଙ୍ଗକୁ ନେଇ, (ଘ) ବାଡ଼ି ଖଣ୍ଡେ ଧରି ।

୪ । ଅଧାଡଜନ୍ ଛଅକୁ କିପରି ରଖିଲେ ବାର ଡଜନ୍ ହେବ ?

୫ । ଗୋଟିଏ ଖାଲି ଅଖାରେ ଆମେ କେତୋଟି ଆମ୍ବ ରଖିପାରିବା ? (କ) ଅଖାଏ, (ଖ) ବହୁତଗୁଡ଼ାଏ, (ଗ) ଗୋଟିଏ, (ଘ) ଅଖାରେ ଯେତେଟା ପଶିବ ସେତେଟା ।

୬ । ଆଜି ଗୁରୁବାର । ଗତ ସୋମବାର ଦିନ ୧୯୭୪ ଡିସେମ୍ବର ୩୦ ତାରିଖ ଥିଲା । ଆଜିର ତାରିଖ କ'ଣ ?
(କ) ୨୬ ଡିସେମ୍ବର ୧୯୭୪, (ଖ) ୨ ଜାନୁଆରୀ ୧୯୭୫, (ଗ) ୩ ଜାନୁଆରୀ ୧୯୭୫, (ଘ) ୧ ଜାନୁଆରୀ ୧୯୭୫ ।

୭ । ଯଦି ୫ × ୮ = ୨୦, ୭ × ୬ = ୨୧ ଓ ୯ × ୮ = ୩୬ ହୁଏ, ତେବେ ୨୬ × ୨ = ?

ଭୁବନେଶ୍ୱର

(ଉତ୍ତର ୩୬ ପୃଷ୍ଠାରେ)



## ବାଳକ ବୈଜ୍ଞାନିକ ଶୁଭମ୍

ପିଲାଟିଏ ସେ । ତେରବର୍ଷ ବୟସ । ନାଁ ଶୁଭମ୍ ବାନାର୍ଜୀ । ଆମେରିକା ତାଙ୍କ ଘର । ସେ ଏବେ ଚକ୍ଷୁହୀନଙ୍କ ପାଇଁ ବ୍ରେଲ ଅକ୍ଷର ମୁଦ୍ରଣ ଉଦ୍ଦେଶ୍ୟରେ ନୂଆ ପ୍ରେସ୍‌ଟିଏ ତିଆରି କରିଛନ୍ତି । ଏଥିରେ ଛପାଇବା ଦାମ ଆମେରିକୀୟ ମୁଦ୍ରାରେ ମାତ୍ର ୩୫୦ ଡଲାର ଖର୍ଚ୍ଚ ହେବ । ଏବେ ଏଭଳି କାର୍ଯ୍ୟପାଇଁ ୨୦୦୦ ଡଲାର ଲାଗୁଚି । ଛୋଟ ପ୍ରେସ୍‌ଟିର ଓଜନ ନ' କିଲୋଗ୍ରାମରୁ ଅଧିକ ନୁହେଁ । ଗୋଟେ ଟେବୁଲ୍‌ରେ ରଖି କାମ କରିହେବ । ବର୍ତ୍ତମାନ ଏ ପ୍ରେସ୍ ବିକ୍ରି ପାଇଁ ଗୋଟେ ନୂଆ କଂପାନୀ ବି ଗଢ଼ାହେଲାଣି ।

--ଡ. ଶୁଭେଂଦ୍ରମୋହନ ଶ୍ରୀ ଚଂଦନ ସିଂହ

# ମୂଲ୍ୟବୋଧ ଶିକ୍ଷା

ଶ୍ରୀ ଶଶଧର ମହନ୍ତୀ

ଆମେ ଯାହା କହୁଛୁ, ଯାହା କରୁଛୁ, ତାହା ହେଉଛି ମାନବତା। ସାମାଜିକ ସେବା, ପରୋପକାର, ଅନାବିଳ ଭଲପାଇବା, ଅନ୍ୟକୁ ବିପଦରେ ସହାୟତା ଦେବା ଆଦି କାର୍ଯ୍ୟକୁ ମାନବିକତା କୁହାଯାଏ। ଯେତେବେଳେ ଆମେ ସାଧନା ସ୍ତରକୁ ଊର୍ଦ୍ଧ୍ୱକୁ ଉନ୍ନତ କରୁ, ତାହା ରୂପାନ୍ତରୀକରଣ ଘଟେ। ଏ ସମସ୍ତ ବ୍ୟବସ୍ଥାକୁ ମୂଲ୍ୟବୋଧ କୁହାଯାଏ। ସେଥିରେ ମଧ୍ୟ ମାନବ ସବୁପ୍ରକାର ଗୁଣର ଅଧିକାରୀ ହେବା ଯୋଗୁଁ ମାନିବକ ମୂଲ୍ୟବୋଧର ସମୃଦ୍ଧି ଘଟେ। କିନ୍ତୁ ଆଜିର ଶିକ୍ଷା ଆଉ ମୂଲ୍ୟବୋଧଭିତ୍ତିକ ହୋଇ ରହିନାହିଁ। ମଣିଷ କେବଳ ନିଜର ସ୍ୱାର୍ଥ ପାଇଁ ସମସ୍ତ ସତ୍ତା ହରାଇ ବସିଲାଣି। ଏଭଳି ଗୋଟିଏ କାହାଣୀରୁ ଆମ୍ଭେମାନେ ଠିକ୍ ବୁଝିପାରିବା ଯେ ସାମ୍ପ୍ରତିକ ସମାଜର ମାନବିକ ମୂଲ୍ୟବୋଧର ସ୍ଥିତି, ପ୍ରଗତି ଓ ଅବସ୍ଥିତି କଣ ?

ଗୋଟିଏ ଗାଆଁରେ ଜଣେ ଅବସରପ୍ରାପ୍ତ ଶିକ୍ଷକ ରହୁଥାଆନ୍ତି। ଘର ଆଗରେ ସୁନ୍ଦର ତୁଳସୀ ଚଉଁରାଟିଏ ଥାଏ। ସେ ପ୍ରତିଦିନ ଗାଧୋଇ ସାରି ତୁଳସୀ ଚଉରାରେ ପାଣି ଦିଅନ୍ତି, ଧୂପ ଦେଇ ପୂଜା କରନ୍ତି। ତୁଳସୀ ଗଛଟି ବେଶ୍ ହୃଷ୍ଟପୁଷ୍ଟ ଥାଏ। ସନ୍ଧ୍ୟାରେ ଶିକ୍ଷକଙ୍କ ସ୍ତ୍ରୀ ମଧ୍ୟ ସନ୍ଧ୍ୟା ଆଳତି ଦିଅନ୍ତି। ଏସବୁ ପ୍ରତି ତାଙ୍କର ଏକମାତ୍ର କୁଳବଧୂଙ୍କର ତିଳେମାତ୍ର ପସନ୍ଦ ନ ଥାଏ। ସେ ବେଳେବେଳେ ପ୍ରତିବାଦ ମଧ୍ୟ କରନ୍ତି - - ଏସବୁ ତୁଳସୀ ଲଗାଇ ଲାଭ କଣ ?

କିଛିଦିନ ପରେ ଶିକ୍ଷକ ଓ ତାଙ୍କର ସ୍ତ୍ରୀ ଉତ୍ତରଭାରତ ତୀର୍ଥ କରିବାକୁ ବାହାରିଗଲେ। ଦୀର୍ଘ ୧୫ ଦିନ ପରେ ଶିକ୍ଷକ ତାଙ୍କର ସହଧର୍ମିଣୀଙ୍କ ସହ ତୀର୍ଥରୁ ଫେରିଲେ। ପରଦିନ ଘରେ ପହଞ୍ଚି ଦେଖିଲେ ଯେ ତୁଳସୀ ଗଛଟି ଚଉଁରା ଉପରେ ନାହିଁ। ତୁଳସୀ ଗଛ ବଦଳରେ ମନି ପ୍ଲାଣ୍ଟ୍ ଗଛ ଲଗାଯାଇଛି। ଖୁବ୍ ଦୁଃଖ ଓ କ୍ରୋଧର ସହିତ ଶିକ୍ଷକଜଣଙ୍କ ନିଜ ପରିବାରର ସମସ୍ତଙ୍କୁ ପଚାରିଲେ, "କିଏ ଏଭଳି ଖରାପ କାମ କରିଛି ?" ବୋହୂ କହିଲେ, "ଦେଖନ୍ତୁ ବାପା, ଆପଣ ଆଦୌ ଦୁଃଖ କରନ୍ତୁ ନାହିଁ। ତୁଳସୀ ଗଛ ତୁଳସୀ ଚଉଁରାରେ ଲଗାଇ ଲାଭ କ'ଣ ? ଆମେ ଟଂକା ଗଛ ଲଗାଇଲେ ପ୍ରଚୁର ଟଂକା ପାଇବା। ଆପଣ ତ ଦେଖୁଛନ୍ତି, ଆପଣ ମାତ୍ର କେତେଟଂକା ବା ପେନ୍‌ସନ୍ ପାଉଛନ୍ତି ! ଆପଣଙ୍କ ପୁଅ ଯେତିକି ଟଂକା ଦରମା ପାଉଛନ୍ତି, ସେତିକି ଅର୍ଥରେ ଆମର ଏତେବଡ଼ ପରିବାର ଚଳେଇବା ବହୁ କଷ୍ଟ ଲାଗୁଛି। ଏ ଗଛ ଲଗାଇଲେ ପ୍ରଚୁର ଟଂକା ମିଳିବ, ଆମେ



ଅତି ଆନନ୍ଦରେ ରହିବା-- ଘର କରିବା, ଗାଡ଼ି କରିବା। ଯାହା ଚାହିଁବା ତାହା କରିବା।"

ଏସବୁ କଥା ବୋହୂଠାରୁ ଶୁଣିବା ପରେ ଶିକ୍ଷକଜଣଙ୍କ ସ୍ତବ୍ଧ ହୋଇଗଲେ। ଚିନ୍ତା କରି କହିଲେ, "କେବଳ ମୋ ବୋହୂ ନୁହେଁ, ପ୍ରତ୍ୟେକ ମଣିଷ ଅର୍ଥସର୍ବସ୍ୱ ପାଲଟିଯାଇଛି। ଅର୍ଥ ପଛରେ ଧାଇଁ ଧାଇଁ ଆଜିର ମଣିଷ ପାଗଳପ୍ରାୟ। ଏସବୁ ବୁଝିବାକୁ ତାଙ୍କୁ ଆଉ ବେଶୀ ସମୟ ବାକି ରହିଲା ନାହିଁ।

ଆଜିର ଶିକ୍ଷାରେ ମୂଲ୍ୟବୋଧ ଗନ୍ଧ ବି ନାହିଁ। ଶ୍ରେୟ ବଦଳରେ ପ୍ରେୟ ହୋଇ ମନୁଷ୍ୟ ଇନ୍ଦ୍ରିୟମାନଙ୍କୁ ସୁଖସର୍ବସ୍ୱ କରିଛି ସିନା, ଉନ୍ନତ ମସ୍ତିଷ୍କ, ମାନବିକତା କୁଆଡ଼େ ଲୁଚିଗଲାଣି। ସୁତରାଂ ଆମ ମସ୍ତିଷ୍କରେ ଥିବା ଶିକ୍ଷାକୁ ଏବଂ ନିଜ ହାତର କୌଶଳକୁ ଉଚିତ ମାର୍ଗରେ ପ୍ରୟୋଗ କରିବାବେଳେ ମଝିରେ ଥିବା ହୃଦୟଟିକୁ ପବିତ୍ର, ଶୁଦ୍ଧ ଓ ନିର୍ମଳ କରି ଈଶ୍ୱରଙ୍କ ପାଇଁ ଖାଲି କରିଦେଲେ ମଣିଷ ଶାନ୍ତି ପାଇବ। ଏଠାରେ ଚିନ୍ତନ କରିବା ଦରକାର-- ଆମେମାନେ ତୁଳସୀ ଚଉଁରାରେ ତୁଳସୀ ଗଛ ଲଗାଇବା ନା ଟଂକାଗଛ ଲଗାଇବା। କେବଳ ଟଂକାର ମାୟା ଓ କାମନାରେ ଜର୍ଜରିତ ମଣିଷ ସନ୍ତୁଳନ ହୋଇ ରହିବ ସିନା, ତୁଳସୀ ଗଛର ପବିତ୍ରତା, ଶାନ୍ତି, ଆନନ୍ଦ ତା' ହୃଦୟରେ ମିଳିପାରିବ ନାହିଁ।

*ସୁଧାନିଧି ବିହାର, ବରାଳ ପୋଖରୀ, ଚରମ୍ପା, ଭଦ୍ରକ,* ❑❑

---

**ଉତ୍ତର:** ୧ । ଚୈତନ୍ୟ, ୨ । ୮, ୩ । (ଖ) ପଛେଇ ପଛେଇ ଯିବାକୁ ପଡ଼ିବ, ୪ । ୬୬ + ୬୬ + ୬ + ୬, ୫ । (ଗ) ଗୋଟିଏ ରଖିଲା ପରେ ଆଉ 'ଖାଲି ଅଖା' ରହିବ କି ?, ୬ । (ଖ), ୭ । ୨୬ (ପ୍ରକୃତ ଗୁଣଫଳର ଅଧା) ।

# ଶିକାରୀ

ଶ୍ରୀ ଭଗବତୀ ଦାଶ

ମାଧପୁର ଗାଁରେ ଗଂଗାଧର ନାମରେ
ଥିଲା ଏକ ବାଣୁଆ ହାତ ତାର ଟାଣୁଆ ।
ଦେଖିଲା ସେ ଗଛରେ ପତରର ପଛରେ
ବସିଥିଲା ପକ୍ଷୀଟି ଧନୁଶର ଯୋଖିଟି ।
ମାରିଦେଲା ଖଞ୍ଜାରେ ବାଜିଲା ତା' ମଞ୍ଜାରେ
ଛଟପଟ ହୋଇ ସେ ଲୋଟିଗଲା ଭୂଇଁରେ ।
କାହିଁ ଥିଲା କେଉଁଠି ବେଗେ କୁନି ପୁଅଟି
ନେଲା ସିଏ କୋଳେଇ ଶରଧାରେ ଗେହ୍ଲେଇ ।
କୋଳ ପରେ ଥୋଇଲା ଥଣ୍ଡା ପାଣି ପେଇଲା,
କାଢ଼ିଲା ସେ ଶରକୁ ପୋଛିଲା ତା'ପରକୁ ।
ମାଆଙ୍କୁ ସେ ଦେଖେଇ ମଲମକୁ ଲଗେଇ
ଆଉଁସିଲା ଦେହକୁ ଡାକଦେଲା ପ୍ରଭୁଙ୍କୁ ।
ବଞ୍ଚିଗଲା ଚଢ଼େଇ ଦେଲା ତାକୁ ଉଡ଼ାଇ
ଗଙ୍ଗାକୁ ସେ ଡାକିଲା ବୁଝାଇ ସେ କହିଲା ।
''ଦେଇନାହୁଁ ଜୀବନ କିଆଁ ନେଉ ପରାଣ
ଜୀବେ ଦୟା ରଖିବୁ ଆଶୀର୍ବାଦ ପାଇବୁ ।''

*ବାରିପଦା, ୱା:ନଂ- ୯, ମୟୂରଭଞ୍ଜ- ୭୫୭୦୦୧* ❋❋



# ଚେମେଣି ଆଜି ବି ଝୁଲୁଛି...

ଶ୍ରୀ ନାମଯଜ୍ଞ ମିଶ୍ର

ରାଜସ୍ଥାନର ଚିମନ୍‌ଭାଇ ଝୁନ୍‌ଝୁନ୍‌ୱାଲା ଜଣେ ପୋଖତ ବେପାରୀ । ଓଟ ଉପରେ ଜିନିଷପତ୍ର ଲଦି ସେ ରାଜ୍ୟ ରାଜ୍ୟ ବୁଲି ବେପାର କରନ୍ତି । ଲୋକଟା ଅନେକ ଅର୍ଥ ଉପାର୍ଜନ କରୁଥିଲେ ବି ଭାରି ଲୋଭୀ । ନିଜ ଖାଇବା ପିଇବାରେ ବି ଟାଣ୍‌ଟୁଣ୍ ହେତୁ ତା ଦେହଟା ଭାରି ଶୁଖିଲା ଶୁଖିଲା । ତାର ଚମସର୍ବସ୍ୱ ଦେହକୁ ଦେଖି ଲୋକେ ତାକୁ ଡାକନ୍ତି ଚେମେଣିଆ ଲାଲ୍ ।

ଦିନେ ଚେମେଣିଆ ଲାଲ୍ ଓଟ ପିଠିରେ ବସି ଗୋଟିଏ ଜଙ୍ଗଲିଆ ରାସ୍ତାରେ ଯାଉ ଯାଉ ଗୋଟିଏ ବାଘ ସହିତ ହଠାତ୍ ଭେଟ ହୋଇଗଲା । ବାଘର ଗର୍ଜନରେ ଓଟଟି ହୁରୁଡ଼ି ପଳାଇବାବେଳେ ଚେମେଣିଆ ଗୋଟିଏ ଗଛଡାଳକୁ ଧରି ଓହଳି ରହିଗଲା । ଓଟଟି କେଉଁଆଡ଼େ ପଳାଇଗଲା । କିଛି ସମୟ ପରେ ଗର୍ଜି ଗର୍ଜି ବାଘ ବି ପଳାଇଗଲା । ଏଣେ ହୁରୁଡ଼ା ଓଟ ପିଠିରେ ଠିଆ ହୋଇ ଚେମେଣିଆ ଗଛ ଡାଳକୁ ଧରି ଓହଳି ବାଘ ମୁହଁରୁ ଜୀବନ ବଞ୍ଚାଇଲା ସିନା, ଏବେ କରେ କ'ଣ ? ଡାଳକୁ ଧରି ଗଛ ଉପରକୁ ଚଢ଼ି ପାରୁନାହିଁ କିମ୍ବା ଡାଳକୁ ଛାଡ଼ି ତଳକୁ ଓହ୍ଲାଇ ପାରୁନାହିଁ । ଏତେ ଉଚ୍ଚରୁ ତ ତଳେ ପଡ଼ିଗଲେ ପ୍ରାଣ ଯିବା ସୁନିଶ୍ଚିତ । ତେଣୁ ସେ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ସେହିପରି ଡାଳକୁ ଧରି ଓହଳି ରହିଥାଏ ।

ଅନେକ ସମୟ ବିତିଗଲା ପରେ ସେଇ ରାସ୍ତାରେ ହାତୀ ଉପରେ ବସି ଜଣେ ଧନୀ ବେପାରୀ ଆସିଲେ । ପାଖରେ ଟଂକାଟୋକର ଗୁଡ଼ିଏ । ସେସବୁକୁ ସେ ଅଣ୍ଟାରେ ବାନ୍ଧି ରଖିଥାଆନ୍ତି । ଚେମେଣିଆର ବିକଳ ଚିତ୍କାର ଶୁଣି ଧନୀ ବେପାରୀଙ୍କ ଦୟା ଜାତ ହେଲା, ତେଣୁ ହାତୀଟିକୁ ଚେମେଣିଆ ପାଖକୁ ନେଇ ହାତୀ ପିଠିରେ ଠିଆ ହୋଇ ଚେମେଣିଆକୁ ଓହ୍ଲାଇ ଆଣିବାକୁ ତା ଗୋଡ଼କୁ ଧରିଲେ । ଠିକ୍ ଏହି ସମୟରେ ପାହାଡ଼ ଉପରେ ଜଙ୍ଗଲପୋଡ଼ି ନିଆଁହୁଳାକୁ ଦେଖି ହାତୀଟି ଅତର୍କ୍କ କିଲ୍‌କାରୀ ମାରି ଦଉଡ଼ି ପଳାଇଲା । ଧନୀ ବେପାରୀଜଣଙ୍କ ହତଚକିତ ହୋଇ ଚେମେଣିଆର ଦୁଇଗୋଡ଼କୁ ଦୁଇହାତରେ ଧରି ସେପରି ଝୁଲି ରହିଗଲେ ।



ଦିନ ଯାଇ ରାତି ହେଲା । ତା' ଆରଦିନ ଦ୍ୱିପ୍ରହର ବେଳକୁ ନାନାପ୍ରକାର ଅଷ୍ଟରତ୍ନମଣ୍ଡିତ ଜଣେ ରାଜପୁତ୍ର ଘୋଡ଼ାରେ ବସି ସେଇ ବାଟରେ ଆସିଲେ । ତାଙ୍କ ଗଳାରେ ବୋଝେ ରତ୍ନହାର, କାନରେ କୁଣ୍ଡଳ,

ଦେହରେ ସୁନା ସାଞ୍ଜୁ ସାଙ୍ଗକୁ ରତ୍ନଜଡ଼ିତ ତରବାରି । ବନ ଭ୍ରମଣରେ ଆସିଥିବା ରାଜପୁତ୍ର ଏ ଦୁଇଲୋକ ଝୁଲୁଥିବା ଦେଖି, ତାଙ୍କଠୁ ସବୁକଥା ଶୁଣି ଦୟାରେ ତରଳିଗଲେ । ତେଣୁ ସେ ନିଜର ଘୋଡ଼ାର ପିଠି ଉପରେ ଠିଆହୋଇ ଏମାନଙ୍କୁ ଓହ୍ଲାଇ ଆଣିବାକୁ ଧନୀ ବେପାରୀଟିର ଗୋଡ଼ଦୁଇଟିକୁ ହାତରେ ଧରିଲେ । ଦୁଃଖର କଥା, ଠିକ୍ ଏଇ ସମୟରେ ପାଖ ବୁଦାରେ ଏକ ହେଟାବାଘ ଯାଉଥିବାର ଖସ୍ ଖସ୍ ଶବ୍ଦ ଶୁଣି ଘୋଡ଼ାଟି ସେଠାରୁ ଦଉଡ଼ି ପଳାଇଲା । ଅଗତ୍ୟା ରାଜପୁତ୍ର ବି ଧନୀ ବେପାରୀର ଗୋଡ଼ ଧରି ଝୁଲି ରହିଗଲେ । ଗଛ ଡାଳ ଧରି ଚେମେଣିଆ, ଚେମେଣିଆର ଗୋଡ଼ ଧରି ଧନୀ ବେପାରୀ ଓ ଧନୀ ବେପାରୀଙ୍କ ଗୋଡ଼କୁ ଧରି ରାଜପୁତ୍ର ଝୁଲି ରହିଥିବାବେଳେ ଚେମେଣିଆ ତଳକୁ ଚାହିଁ ଧନୀ ବେପାରୀଙ୍କ ଟଂକାବୁଜୁଳା ଓ ରାଜପୁତ୍ରଙ୍କ ରତ୍ନ ଅଳଂକାର ଦେଖି ଲୋଭରେ ପାଗଳ ହୋଇ ଉଠିଲା । ତତ୍କ୍ଷଣାତ୍ ଏ ଦୁହିଙ୍କୁ ଚାହିଁ କହିଲା– ତୁମେଦୁହେଁ ଟଂକାଟୋକର, ଆୟ ଅଳଂକାର ଯାହା ଅଛି, ଗୋଟିଏ ହାତରେ ଖୋଲି-ଖାଲି ମୋତେ ଦେଇପକାଅ, ନଚେତ୍ ମୁଁ ହାତ ଡାଳରୁ ଛାଡ଼ିଦେବି, ବୋଇଲେ ତୁମେ ଦୁହେଁ ତଳେ ପଡ଼ି ମରିବ । ମୁଁ ପଡ଼ିଲେ ବି ତୁମ ଉପରେ ପଡ଼ିବି, ମୋର କିଛି ହେବନାହିଁ ।

ଏ ଦୁହେଁ ପ୍ରମାଦ ଗଣି ତାକୁ ବୁଝାସୁଝା କରୁଥିବାବେଳେ ଆକାଶମାର୍ଗରେ ଯାଉଥିବା ଜଣେ ଦେବଦୂତ ଏସବୁ ଦେଖୁଥିଲେ । ମୃତ୍ୟୁବେଳେ ଚେମଣିଆର ଧନଲୋଭ ଓ ଉପକାରୀ ପୁରୁଷମାନଙ୍କ ଉପରେ ତା'ର ଦାଉ ସାଧିବା ଭାବନା ଦେଖି ସେ ରାଗିଗଲେ । ସୁତରାଂ ଅଦୃଶ୍ୟ ପବନ ଭଳି ଆସି ଝଡ଼ ବେଗରେ ଧନୀ ବେପାରୀ ଓ ରାଜକୁମାରଙ୍କୁ ଛଡ଼ାଇ ଆଣି ଧୀରେ ଧୀରେ ଭୂଇଁରେ ଠିଆ କରିଦେଲେ ଓ ନିଜ ରୂପ ଧରି ଚେମେଣିଆକୁ ଅଭିଶାପ ଦେଲେ, "ତୁ ସେହି ଗଛଡାଳରେ ଲଟକି ରହି ଶୁଖି ଶୁଖି ମରିଯିବୁ । କେହି ତୋତେ ଉଦ୍ଧାର ନ କରୁ । ଆଜିଠୁ ଏହି ସଂସାରରେ ଯେଉଁମାନେ ତୋ ଭଳି ନିପଟ ଧନଲୋଭୀ ଓ ଅକୃତଜ୍ଞ ହେବେ, ସେମାନେ ମଲା ପରେ ଚେମେଣି ହୋଇ ଗଛ ଡାଳରେ ଅନ୍ଧାରୁଆ ଛାତରେ ଏଭଳି ଝୁଲି କଷ୍ଟ ଭୋଗିବେ । ଦେହରେ ମାଉଁସ ରହିବ ନାହିଁ । ଆଲୁଅକୁ ଡରିବେ । ଯେଉଁ ମୁହଁରେ ଖାଇବେ, ସେଇ ମୁହଁରେ ମଳତ୍ୟାଗ କରିବେ । ସମସ୍ତଙ୍କୁ ଡରିମରି ଦିନ କାଟିବେ । ତୁ ବି ମଲାପରେ ଏଇ ମୁଁ କହିବା ଭଳି ଚେମେଣି ହୋଇ ଜନ୍ମ ହେବୁ । ତୋ'ଠାରୁ ଚେମେଣି ବଂଶର ଆରମ୍ଭ ହେବ ।''



ଚେମେଣିଆ ତାର ଲୋଭୀ ଓ ଅକୃତଜ୍ଞପଣିଆ ଯୋଗୁଁ ଗଛଡାଳରେ ଝୁଲି ଝୁଲି ମରି ପୁଣି ଚେମେଣି ହୋଇ ଜନ୍ମି କଷ୍ଟ ଭୋଗିଲା । ତା' ଭଳି ଲୋଭୀ ଓ ଅକୃତଜ୍ଞ ମଣିଷ ସେହିଭଳି ଚେମେଣି ହୋଇ ଝୁଲନ୍ତି । ତେଣୁ ଚେମେଣି ଆଜି ବି ଝୁଲୁଥିବାର ଆମେ ଦେଖୁ ।

*ବରପାଲିପଡ଼ା, ବଲାଙ୍ଗିର* ❋❋

---

କହିଲ ଦେଖିର ଉତ୍ତର:- ଜନମକାଳ



# ମଣିଷ ଜୀବନ ନୁହଁଇ କେବଳ

ଶ୍ରୀ ଶତ୍ରୁଘ୍ନ ପଟ୍ଟନାୟକ

ମଣିଷ ଜୀବନ ବଡ଼ ବିଚିତ୍ର । କେତେବେଳେ କାହା ଭାଗ୍ୟଚକ୍ରରେ କିପରି ପରିବର୍ତ୍ତନ ହେଉଛି, ତାହା ଜାଣିବା ମୁସ୍କିଲ୍ ବ୍ୟାପାର । 'ଦୁର୍ଲଭ ମାନବ ଜୀବନ, ହେଲେ ଚିନ୍ତନ୍ତି ଯୋଗୀଜନ ।' ଭାଗବତରେ ବର୍ଣ୍ଣିତ ହୋଇଛି– ଅନେକ ଜନ୍ମ ତପ ବଳେ, ମାନବ ଜନ୍ମ ମହୀତଳେ । ତେଣୁ ଏହି ଦୁର୍ଲଭ ମାନବଜନ୍ମ ପାଇବାକୁ ମଣିଷ କେତେ ହୀନ ଯୋନିରେ ଜନ୍ମଗ୍ରହଣ କରିଛି, ତାହା ଭାବିହୁଏନି । ଏହି ମାନବଜନ୍ମ ଶେଷ ଜନ୍ମ ବୋଲି ଯୋଗୀ, ମୁନି, ମହାପୁରୁଷ– ଏପରିକି ନିଜେ ଭଗବାନ ଶ୍ରୀମୁଖରେ ଗୀତା ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ଏହି ଜନ୍ମରେ କିଛି ପୁଣ୍ୟ କାମ ଦ୍ୱାରା ଜୀବନର ପରିପୂର୍ଣ୍ଣତା ଲାଭ ହୋଇଥାଏ । ଗୋଟିଏ ବିଚିତ୍ର କର୍ମ ହେଲା ଏହା ଯେ, ମଣିଷ କୃତକର୍ମର ଫଳାଫଳ ଆଗରୁ ଜାଣି ମଧ୍ୟ ପୁଣ୍ୟକର୍ମ ଛାଡ଼ି ପାପକର୍ମରେ ମନଯୋଗ ଦେଇଥାଏ । ଚୋରି କଲେ ପାପ ପରି ଜଘନ୍ୟ କାର୍ଯ୍ୟ ଦ୍ୱାରା ତାକୁ ମୃତ୍ୟୁଦଣ୍ଡ ମିଳିଥାଏ– ଏହା ଜାଣି ମଧ୍ୟ ମଣିଷ ସେହି ପାପକର୍ମ କରିବାକୁ ମନ ବଳାଇଥାଏ । ମଣିଷ ବିପଦବେଳେ ଭଗବାନଙ୍କୁ ଅନେକ ପ୍ରକାର ଯାଚନା କରିଥାଏ; କିନ୍ତୁ ବିପଦ ଟଳିଗଲେ ସବୁ ଭୁଲିଯାଏ । ବଡ଼ ବିଚିତ୍ର ଜୀବ ଏହି ମଣିଷ । ଏହି ମର୍ମରେ ଏକ ଉପାଖ୍ୟାନ ବା ଘଟଣାବଳୀ ମନେପଡ଼େ ।

ଥରେ ପୁରୀ ସମୁଦ୍ରରେ ସ୍ୱାମୀସ୍ତ୍ରୀ ସ୍ନାନ କରୁଥାନ୍ତି ମହା ଆନନ୍ଦରେ । ହଠାତ୍ ସ୍ୱାମୀଠାରୁ ସ୍ତ୍ରୀ ଦୂରେଇଯାଇ ସମୁଦ୍ରର ଉତ୍ତାଳ ତରଂଗରେ ଭାସିଯାଇ ବୁଡ଼ିଯିବାକୁ ଲାଗିଲା । ଯଦିଓ ତା' ଆଖି ଆଗରେ ନିଜ ପ୍ରାଣର ପତ୍ନୀ ବୁଡ଼ିଯାଉଛି, ନିଜ ଜୀବନ ପ୍ରତି ବିପଦ ଆଶଂକା କରି ସମୁଦ୍ର କୂଳରେ ଠିଆ ହୋଇ ସ୍ୱାମୀଟି କେବଳ ବିକଳରେ 'ବଞ୍ଚାଓ ବଞ୍ଚାଓ' ବୋଲି ଚିତ୍କାର କରୁଥାଏ । ଏହି ସମୟରେ ଏକ ନୋଳିଆ ଜୀବନଭେଳା ଧରି ଉଭା ହୁଅନ୍ତେ, ସେହି ଭଦ୍ରବ୍ୟକ୍ତି ନୋଳିଆର ଗୋଡ଼ହାତ ଧରି ବଞ୍ଚାଇବା ବିନିମୟରେ ସେ ଯାହା ମାଗିବ, ସବୁ ଦେବାକୁ ପ୍ରତିଶ୍ରୁତି ଦେଲେ । ଏପରିକି ତାଙ୍କର ଅର୍ଜିତ ସ୍ଥାବର ଅସ୍ଥାବର ସମ୍ପତ୍ତିରୁ ଅର୍ଦ୍ଧେକ ଦେବାକୁ କହିଲେ । ବିଚରା ଗରିବ ନୋଳିଆ ସେ । ଭଦ୍ରଲୋକର ସମ୍ପତ୍ତିର ମୂଲ୍ୟ ଆକଳନ କରିବାର ଅବକାଶ ନ ପାଇ ପ୍ରଥମେ ତାର କର୍ତ୍ତବ୍ୟ ପଥରେ ସେହି ବୁଡ଼ିଯାଉଥିବା ଭଦ୍ରମହିଳାଙ୍କୁ ଉଦ୍ଧାର କରିବାକୁ ଅଗ୍ରସର ହୋଇଥିଲା ।

ଚାହୁଁ ଚାହୁଁ ସେହି ନୋଳିଆ ନିଜ ଜୀବନଭେଳା ସହ ଅବିଳମ୍ବେ ସମୁଦ୍ରର ସେହି ଉତ୍ତାଳ ତରଂଗ ଭେଦ କରି ଗଭୀର ସମୁଦ୍ରରେ ବୁଡ଼ି ଯାଉଥିବା ସେହି ଭଦ୍ରମହିଳାଙ୍କୁ ଯିଏକି କୂଳରେ ଆକୁଳଭରା କ୍ରନ୍ଦନରେ ରତଥିବା ଭଦ୍ରଲୋକର ସହଧର୍ମିଣୀ, ଉଦ୍ଧାର କରିବାକୁ

ଅଗ୍ରସର ହେଲା । କ୍ରମେ ସେ ଭଦ୍ରମହିଳା ପାଖରେ ପହଞ୍ଚିବାରୁ କୂଳରେ ଠିଆ ହୋଇ ତାର ସ୍ୱାମୀ ବିକଳ କଣ୍ଠରେ କହିବାକୁ ଲାଗିଲେ, "ଲକ୍ଷେ ଟଙ୍କା ଦେବି ।" ସେହି ନୋଳିଆ ଯେତେବେଳେ ଜୀବନଭେଳା ସାହାଯ୍ୟରେ ବୁଡ଼ି ଯାଉଥିବା ଭଦ୍ରମହିଳାଙ୍କୁ ଧରିଲା, ସେତେବେଳେ ସେହି ଭଦ୍ରଲୋକ କହିବାକୁ ଲାଗିଲେ, "ହେ ଧୀବର-ଭାଇ, ଶୀଘ୍ର ମୋ ସ୍ତ୍ରୀକୁ ଉଦ୍ଧାର କରିଦେଲେ ମୁଁ ପଚାଶ ହଜାର ଟଙ୍କା ଦେବି ।" ଏକଥା ଅବଶ୍ୟ ସମୁଦ୍ରର ଗର୍ଜନରେ ନୋଳିଆ ବିଚରା ଶୁଣି ପାରୁ ନ ଥିଲା, କିନ୍ତୁ କୂଳରେ ଦେଖଣାହାରୀଙ୍କ ମଧ୍ୟରୁ ଜଣେ ବ୍ୟକ୍ତି ଏହା ଶୁଣୁଥା'ନ୍ତି ।

ଯେତେବେଳେ ନୋଳିଆ ବହୁକଷ୍ଟରେ ଲହରୀ ପରେ ଲହରୀ ପାର ହେଉଥାଏ, ସେତେବେଳେ ଭଦ୍ରମହିଳାଙ୍କ ସ୍ୱାମୀ ପୁନଶ୍ଚ କହିବାକୁ ଲାଗିଲେ ଯେ ଯଦି ନୋଳିଆ ତାଙ୍କ ସ୍ତ୍ରୀଙ୍କୁ ଅକ୍ଷତ ଅବସ୍ଥାରେ କୂଳକୁ ଆଣେ, ସେ ଦଶହଜାର ଟଙ୍କା ଦେବେ । ଏହିପରି ଯେତେ ନିକଟତର ହେବାର ଦେଖୁଥା'ନ୍ତି, ସେତେ ମୁଦ୍ରାର ପରିମାଣ ବା ପାରିଶ୍ରମିକ ମୂଲ୍ୟ କମିବାରେ ଲାଗୁଥାଏ । ନୋଳିଆ ବହୁ କଷ୍ଟ କରି, ପ୍ରାୟ ଦୁଇଘଣ୍ଟା ସମୁଦ୍ର ଲହରୀ ସଂଗେ ସଂଗ୍ରାମ କରି ନିଜ ଜୀବନକୁ ବାଜି ରଖି ସେହି ଭଦ୍ରମହିଳାଙ୍କୁ କୂଳକୁ ଆଣିଲା । ଭଦ୍ରମହିଳା ପାଣି ପିଇ ଅଚେତ ହୋଇଯାଇଥିଲେ । ତାଙ୍କୁ ଲମ୍ବ କରି ଶୁଆଇ ଯେତେବେଳେ ସ୍ୱାମୀ ନିଜ ସ୍ତ୍ରୀର ଜୀବନ ରକ୍ଷା ସୁନିଶ୍ଚିତ ଜାଣିଲେ, କହିଲେ– "ହେ ଭାଇ ! ଜଲଦି ଜଲଦି ମୋ ସ୍ତ୍ରୀ ପିଇଯାଇଥିବା ପାଣି ବାହାର କରି ସାଷ୍ଟାମ କରି ଦେ, ମୁଁ ଶହେ ଟଙ୍କା ଦେବି ।" ନୋଳିଆ କିଛି ନ ଶୁଣି ଭଦ୍ରମହିଳାଙ୍କ ପେଟରୁ ପାଣି ବାହାର କରି ମହିଳାଙ୍କୁ ସାଷ୍ଟାମ କରିଥିଲା । ସ୍ୱାମୀ ଦଶଟଙ୍କା ପକେଟରୁ ବାହାର କରି ଗରିବ ନୋଳିଆକୁ ଦେଇଥିଲେ । ନୋଳିଆ ସେ ଦଶଟଙ୍କିଆ ନୋଟ୍‌କୁ ସମୁଦ୍ର କୂଳର ପବନରେ ଉଡ଼ାଇଦେଇ ଚାଲିଗଲା ।

ପାଖରେ ଠିଆ ହୋଇ ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଦୃଶ୍ୟ ଦେଖୁଥିବା ଲୋକଜଣଙ୍କ ସେହି ଭଦ୍ରଲୋକଙ୍କୁ କହିଲେ, "ଦେଖିଲେ ଆଜ୍ଞା, ଆପଣଙ୍କର ପ୍ରତିଶ୍ରୁତି ଯେପରି ପାଣିର ଗାର ହୋଇଗଲା, ଆପଣ ଦେଇଥିବା ଦଶଟଙ୍କାକୁ ସେ ଭ୍ରୂକ୍ଷେପ ନ କରି ସେହିପରି ପବନରେ ଉଡ଼ାଇଦେଲା । ଏଥିରୁ କ'ଣ ଶିଖିଲେ ଆଜ୍ଞା ! ମଣିଷ ଜୀବନ ପାଣି ଫୋଟକା, ଆଉ ଧନଦୌଲତ ଚିରସ୍ଥାୟୀ ନୁହେଁ । ଦିନେ ନା ଦିନେ ସବୁ ଏହିପରି ଚାଲିଯିବ । ଧନ, ଜୀବନ କ୍ଷଣସ୍ଥାୟୀ ଜାଣି ସୁଦ୍ଧା ମଣିଷ ବୁଝି ନ ପାରି ଏପରି ଅପରିଣାମଦର୍ଶିତାର ପରିଚୟ ଦେଇଥାଏ ।''

*ଝାଞ୍ଜିରୀମଙ୍ଗଳା, କଟକ-୭୫୩୦୦୯*

---

# ଗୁରୁଜନଙ୍କୁ ସମ୍ମାନ ଦେବାର କେତୋଟି ପଥ

☆ ତାଙ୍କର ମତାମତକୁ ସମାଲୋଚନା କର ନାହିଁ ।

☆ ସେମାନେ କଥା କହିଲାବେଳେ ତାଙ୍କର କଥାକୁ କାଟନାହିଁ ।

☆ ତାଙ୍କର ବୟସକୁ ସମ୍ମାନ ଦିଅ ।

☆ ତାଙ୍କର ଆଗରେ ତାଙ୍କର ନାତିନାତୁଣୀଙ୍କୁ ମାରନାହିଁ ।

☆ ତାଙ୍କର ଉପଦେଶ ଏବଂ ତାଙ୍କର ଗତିବିଧିକୁ ଗ୍ରହଣ କର ।

☆ ଯେତେବେଳେ ସେମାନେ ଉପସ୍ଥିତ ଅଛନ୍ତି, ତାଙ୍କୁ ନେତୃତ୍ୱ ଦେବାର ସୁଯୋଗ ଦିଅ ।

☆ ତୁମର କଥାକୁ ତାଙ୍କ କଥା ଉପରେ ଚାପ ଦିଅନାହିଁ ।

☆ ତାଙ୍କୁ ଥଟ୍ଟା କରନାହିଁ । (ଆଉକିଛି ଆରଥରକୁ)



# ଚକି

ଡକ୍ଟର କୃତ୍ତିବାସ ନାୟକ

ଚକି ବୋଲି ମୋତେ ସଭିଏଁ ଜାଣନ୍ତି
ରୂପ ମୋର ଚକ ପରି
ପେଷିଦିଏ ବୋଲି ପେଷା ବି କହନ୍ତି
ଚୂରିଦିଏ ମୁଗ, ବିରି ।
ଶିଳର ଭଉଣୀ ପଞ୍ଚସ୍ୱର୍ଣ୍ଣ ମଧ୍ୟେ
ରହିଛି ନାଆଁଟି ମୋର
ସବୁ ଶୁଭ କାର୍ଯ୍ୟେ ମୋତେ ଲୋଡ଼ା ପୁଣି
ହୁଏ ମୁଁ ବୋହୂର ଭାର ।
ପଥରରେ କଣା କରେ ପଥୁରିଆ
କାଠ ଦିଏ ଖିଲ କରି
ତଳ ଚକି ପରେ ଉପର ଚକିକୁ
ବୁଲାନ୍ତି ହାତରେ ଧରି ।

ଘୋରଣା ନାମରେ ଆଉ କେତେ ଜଣ
ଘୂରାନ୍ତି ମୋହର ଚକି
ବାହାଘର ମୁଗଜାଇ ମଙ୍ଗୁଳାନ୍ତି
ସାତ ଅହି ନାରୀ ଡାକି ।
ଘରଣୀଙ୍କ ପାଇଁ ଗୃହଲକ୍ଷ୍ମୀ ମୁହିଁ
ଘରକୋଣେ ଥାଏ ବସି
ରାଶି, ମୁଗ, ବିରି ଚୋପାକୁ ଛଡ଼ାଏ
ମୋ ଦେହରେ ଘସି ଘସି ।
ଗୁଣ୍ଡ କରିଦିଏ ଚାଉଳ ଦେଲେ ମୁଁ
ଘରଣୀ କରନ୍ତି ପିଠା
ମଣିଷ ସେବାରେ ଲାଗିଥାଏ ବୋଲି
ଲାଗେନାହିଁ କେବେ ବ୍ୟଥା ।
ବିଜୁଳିରେ ଏବେ ଚାଲିଛି ଘୋରଣା
ମୋତେ ବା ପଚାରେ କିଏ ?
ମଣିଷ ତିଆରି ଆଧୁନିକ ଚକି
ମୋର କାମ କରିଦିଏ ।

*ଆକାଶବାଣୀ, ଜୟପୁର* **



**ବିଶ୍ୱାସ ନ ହେଲେ ବି ସତ**

# ଉଦାରମନା ମହାପ୍ରାଣ ରାମକୃଷ୍ଣ

ଶ୍ରୀ ଚୈତନ୍ୟ କୁମାର ସାହୁ

୧୯୭୩ ମସିହା ନଭେମ୍ବର ୧୮ ତାରିଖ ବୁଧବାର ହୋଇଥାଏ । ଜନତା ରଂଗମଚରେ ସାରା ଓଡ଼ିଶାର ଶିକ୍ଷକଙ୍କ କୋଳାହଳ । ଶିଶୁ ସାହିତ୍ୟିକ ବନମାଳୀ ବ୍ରହ୍ମଚାରୀଙ୍କ ଜୟନ୍ତୀ ଦିବସ । ସେ ଥିଲେ ଶିକ୍ଷକ ଗୌରବ ଓ ଶିକ୍ଷକ ପ୍ରାଣର ସ୍ପନ୍ଦନ । ଶିକ୍ଷକମାନଙ୍କ ସୁଖଦୁଃଖରେ ତାଙ୍କ ସଂଗ୍ରାମ ଥିଲା ଅବ୍ୟାହତ ।

ରାମକୃଷ୍ଣ ନନ୍ଦ ଥିଲେ ଜୟନ୍ତୀ ସଭାର ସଭାପତି । ମୁଁ ଥିଲି ଏହଣ ଜୟନ୍ତୀ କମିଟିର ଆବାହକ ତଥା ସଂପାଦକ । ଓଡ଼ିଶାର ସବୁ ଜିଲାରୁ ଶିକ୍ଷକମାନେ ମେଳି ହୋଇଥିଲେ । ଜଣଙ୍କ ପରେ ଜଣେ ବକ୍ତା ତାଙ୍କ ଭାଷଣ ଦେଇ ଚାଲିଲେ । ବ୍ରହ୍ମଚାରୀଙ୍କ ଗୁଣ କୀର୍ତ୍ତନ କଲେ । ସମୟ ଅତିକ୍ରାନ୍ତରେ ରାତି ୧୦.୩୦ ହୋଇଗଲା । ମୋତେ ନିର୍ଦ୍ଦେଶ ହେଲା । ମୁଁ ମୋ ବକ୍ତବ୍ୟ ରଖିଲି । ତା' ପରେ ସଭାପତି ତାଙ୍କ ଅଭିଭାଷଣରେ କହିଲେ, 'ବ୍ରହ୍ମଚାରୀ ଜଣେ ମହାନ୍ ଶିକ୍ଷକ । ଶିକ୍ଷକ ଜାତିର ଗୌରବ; ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ମଧ୍ୟ । ଶିକ୍ଷକ ଓ ଶିଶୁମାନଙ୍କର ସେ ଚିର ନମସ୍ୟ ହୋଇ ରହିବେ ।......' ଶେଷରେ ତାଙ୍କୁ ଉପଢୌକନ ଦେଇ ମହିମାମଣ୍ଡିତ କରାଗଲା । କରତାଳି ପରେ କରତାଳି ଚାଲିଲା । ସଭା ଶେଷ ହେଲା ।

କଥା ଏଇଆ ଯେ ସଂସାର ପ୍ରେସ୍‌ରେ ବ୍ରହ୍ମଚାରୀ ଦିନେ ପ୍ରୁଫ୍ ରିଡର୍ ଥିଲେ । ନିଜର ଆର୍ଥିକ ଗୁଜୁରାଣ ମେଣ୍ଟାଇବା ପାଇଁ ମାସିକ ବେତନରେ ଚାକିରି କରିଥିଲେ । ଜଣେ ଥିଲେ କର୍ମବୀର ଓ ଅନ୍ୟ ଜଣେ କର୍ମଚାରୀ । କର୍ମବୀର ରାମକୃଷ୍ଣଙ୍କ କର୍ମସାଧନା ଦେଖି ବ୍ରହ୍ମଚାରୀ ବି ନିଜେ ଜଣେ କର୍ମବୀର ହୋଇଗଲେ । ସମୟର ସ୍ରୋତରେ ସେ ଶିକ୍ଷକ ସଂଘର ପ୍ରଥମେ ସଂଗଠକ ଓ ପରେ ଆଜୀବନ ସଭାପତି ହେଲେ ।

''ଜଣେ କର୍ମପ୍ରିୟ ବ୍ୟକ୍ତି କର୍ମପଥରେ ତାଙ୍କର ସାହିତ୍ୟ ସାଧନା ସହ ଶିକ୍ଷକ ଜାତିର ଦୁଃଖଦୁର୍ଦ୍ଦଶାକୁ ଦେଖିପାରୁଥିଲେ । ଅଙ୍ଗେ ଲିଭାଇବାର ବେଦନା ବି ସାଉଣ୍ଟୁଥିଲେ । ଶିକ୍ଷକଙ୍କ ପାଇଁ ଅନ୍ୟାୟ ବିରୋଧରେ ସଂଗ୍ରାମ କରୁ କରୁ ସେ ସେମାନଙ୍କର ନେତା ହୋଇ-ଗଲେ । ଶିକ୍ଷକନେତା ବ୍ରହ୍ମଚାରୀ, ଶିକ୍ଷକପ୍ରାଣ ବ୍ରହ୍ମଚାରୀ— ଶିକ୍ଷକ ଜାତିର ପିତା ବ୍ରହ୍ମଚାରୀ ସମଗ୍ର ଶିକ୍ଷକସମାଜ ତାଙ୍କ ପାଖରେ ଆଜୀବନ ଋଣୀ ।'' —ଏପରି ବକ୍ତବ୍ୟ ରଖି ରାମକୃଷ୍ଣବାବୁ ବ୍ରହ୍ମଚାରୀଙ୍କର ବ୍ୟକ୍ତିତ୍ୱର ଯଶଗାନ କଲେ । ଉଚ୍ଚ ଶିଢ଼ିରେ ଏମିତି ସମ୍ମାନିତ କରି ଅତ୍ୟନ୍ତ ଭାବବିହ୍ୱଳ ହୋଇଗଲେ । ବ୍ରହ୍ମଚାରୀଙ୍କର ଆଖିରୁ ସ୍ୱତଃ ଧାର ଧାର ଲୁହ ଗଡ଼ିପଡ଼ିଲା । ରାମକୃଷ୍ଣବାବୁ ତାଙ୍କୁ କୋଳେଇନେଇ ନିବିଡ଼ ଆଲିଙ୍ଗନ କଲେ । ସମଗ୍ର ସଭାସ୍ଥଳ ସ୍ତବ୍ଧ ହୋଇଗଲା ।

ଜୀବନରେ ଏପରି ମିଳନ ମୁଁ ଖୁବ୍ କମ୍ ଦେଖିଛି । ଦୁହେଁ ଥିଲେ ଲବ୍ଧପ୍ରତିଷ୍ଠ ଶିଶୁ ସାହିତ୍ୟିକ ଓ ଶିକ୍ଷାବିତ୍, ଏଥିରେ ସନ୍ଦେହ ନାହିଁ । ରାମକୃଷ୍ଣବାବୁ ସାରା ଜୀବନ ତାଙ୍କର ସାହିତ୍ୟ ସାଧନା ଶିଶୁମାନଙ୍କ ବିକାଶ ନିମନ୍ତେ ଉତ୍ସର୍ଗ କରିଛନ୍ତି । ସଂସାର ପତ୍ରିକାରେ ଶିକ୍ଷାମୂଳକ ଲେଖାମାନ ଲେଖି ଶିଶୁମାନଙ୍କର ଅନୁସନ୍ଧିତ୍ସୁ ମନର ଜ୍ଞାନ ବିକଶିତ କରିଛନ୍ତି । ସେ ପ୍ରଣମ୍ୟ ଓ ଧନ୍ୟବାଦାର୍ହ । ତାଙ୍କର ସେହି 'ସଂସାର' ଶିଶୁ ପତ୍ରିକା ଆଜି ସାରା ଶିଶୁ ସଂସାରକୁ ଉଦ୍‌ବେଳିତ ଓ ମାର୍ଗଦର୍ଶନ କରି ଚାଲିଛି ।

*ସିଦ୍ଧିଦୁର୍ଗା ଇଂଜିନିୟର୍ସ, ଖପୁରିଆ, କଟକ-୧୨* ❋❋



# ସିଏ ବି ମୁଁ ହିଁ

ଅନୁସୃଜନ– ଶ୍ରୀ ମୀନକେତନ ସାହୁ
(ମୂଳ ସଂସ୍କୃତ) ଶ୍ରୀ ଅମୃତେଶ୍ୱର କୁମାର

ଗୋସ୍ୱାମୀ ତୁଳସୀ ଦାସ ଜଗନ୍ନାଥସ୍ୱାମୀଙ୍କ କୀର୍ତ୍ତି ଶ୍ରବଣ କରି ତାଙ୍କ ଦର୍ଶନ ଜିଜ୍ଞାସାପୂର୍ବକ ପୁରୀକୁ ଆଗମନ କଲେ । ଭଗବତ୍ ଦର୍ଶନାର୍ଥେ ସେଠାରେ ମହା ସମାବେଶ ଓ ସମାରୋହ ଦୃଷ୍ଟିଗୋଚର ହେଲା । ତୁଳସୀ ଦାସ ରାମନାମ ଜପ କରି କରି ମନ୍ଦିରରେ ପ୍ରବେଶ କଲେ । ସେଠାରେ ସେ ଦେଖିଲେ ହସ୍ତପଦବୀହିନ କାଷ୍ଠମୟ ମୂର୍ତ୍ତି, "ମୋର ଆରାଧ୍ୟଦେବ ତ କମନୀୟ ମୂର୍ତ୍ତି । ଏହି ଦାରୁମୟ ହସ୍ତପଦବିହୀନ ମୂର୍ତ୍ତି ମୋ ଇଷ୍ଟଦେବଙ୍କ ଯୋଗ୍ୟ ହୋଇ ନ ପାରନ୍ତି ।" ଏପରି ଚିନ୍ତା କରି ତୁଳସୀ ଦାସ ମନ୍ଦିରରୁ ନିର୍ଗତ ହେଲେ । ଦୂରସ୍ଥ କୌଣସି ବୃକ୍ଷର ନିମ୍ନଭାଗରେ ଉପବେଶନ କରି ଅନୁଭୂତ ନିରାଶ ଭାବକୁ ସ୍ମରଣ କଲେ– ଏହି ହସ୍ତପଦବିହୀନ ଦାରୁଦେବ କିଏ ? ନୀଳାମ୍ବୁଦ ଶ୍ୟାମ ତୁମେ କାହିଁ ? ମୁଁ ତୁମ ଦର୍ଶନ ଇଚ୍ଛୁକ, ଅଭିଳାଷୀ କେବଳ ତୁମ ଦର୍ଶନରେ; ଏହି କାଷ୍ଠମୟରେ ନୁହେଁ ।

ଏପରି କହି ପ୍ରଭୁଙ୍କ ନିରନ୍ତର ପ୍ରାର୍ଥନାରେ ମଜ୍ଜିଗଲେ । ଦୁଇଦିନ ପର୍ଯ୍ୟନ୍ତ ବିଳାପଯୁକ୍ତ ପ୍ରାର୍ଥନା ଅବସରରେ ଅନ୍ନଜଳ ସେବନ ମଧ୍ୟ ତ୍ୟାଗ କଲେ ।

ତୃତୀୟ ଦିବସରେ, "ହେ ତୁଳସୀ ଦାସ ! ତୁମେ କେଉଁଠି ?" ଏପରି ପଚାରି ପଚାରି କେହି ଜଣେ ତାଙ୍କୁ ଖୋଜୁଥିଲେ । ସିଏ ତାଙ୍କ ନିକଟକୁ ଆସି ତାଙ୍କୁ ଚିହ୍ନିପାରି କହିଲେ, "ଆଃ, ତୁମେ ଏଠି ! ମୁଁ ସବୁଠି ଖୋଜି ସାରିଲିଣି ।"

ତୁଳସୀ ଦାସ ପ୍ରଶ୍ନ କଲେ, "କି ଉଦ୍ଦେଶ୍ୟରେ ତୁମେ ମୋର ଅନ୍ୱେଷଣ କରୁଛ ?" ଅନ୍ୱେଷଣରତ ବାଳକ କହିଲେ, "ଦେବ ଜଗନ୍ନାଥ ତୁମ ଉଦ୍ଦେଶ୍ୟରେ ପ୍ରସାଦ ପ୍ରେରଣ କରିଛନ୍ତି । ଭୋଗ ପ୍ରଦାନ ନିମିତ୍ତ ମୁଁ ଉପସ୍ଥିତ ।"

"ଧିକ୍ ଜଗନ୍ନାଥଙ୍କ ପ୍ରସାଦକୁ ! ସେଥିରେ ମୋର କି ପ୍ରୟୋଜନ ? ମୁଁ ତାହା ଗ୍ରହଣ କରିପାରିବି ନାହିଁ ।" ତୁଳସୀ ଦାସ ନିରାଶାପୂର୍ଣ୍ଣ ଉକ୍ତି ପ୍ରକଟ କଲେ ।

"ଆର୍ଯ୍ୟ ! ଜଗନ୍ନାଥପ୍ରସାଦ ସର୍ବତୋଭାବେ ସୁଦୁର୍ଲଭ । ସେପରି ମହାର୍ଘ ପ୍ରସାଦ ଭଗବାନ ସ୍ୱୟଂ ତୁମ ନିମିତ୍ତ ହିଁ ପ୍ରେରଣ କରିଛନ୍ତି । ତାକୁ କାହିଁକି ପ୍ରତ୍ୟାଖ୍ୟାନ କରୁଛ ?"

"ଇଷ୍ଟଦେବତାଙ୍କୁ ସମର୍ପଣ କରି ମୁଁ ଆହାର ସେବନ କରେ । ଏହି ଦାରୁଦେବଙ୍କ ପ୍ରେରିତ ପ୍ରସାଦକୁ ମୁଁ ମୋର ଇଷ୍ଟଦେବଙ୍କୁ କିପରି ଅର୍ପଣ କରିବି ?"

"ଏହି ମହାପ୍ରସାଦରେ ମଧ୍ୟ ତୁମେ ତୁମ ଇଷ୍ଟଦେବଙ୍କ ପ୍ରତିରୂପ ନିଶ୍ଚୟ ଉପଲବ୍ଧ କରିପାରିବ ।"

" ତା କିପରି ସମ୍ଭବ ? ଦାରୁମୂର୍ତ୍ତି କିପରି ମୋର ଇଷ୍ଟଦେବ ହୋଇପାରିବେ ? ମୋର ଇଷ୍ଟଦେବତା ତ କମନୀୟ ମୂର୍ତ୍ତି । ମେଘଶ୍ୟାମସୁନ୍ଦର...... ।" ଏଭଳି କଥନପୂର୍ବକ ତୁଳସୀ ଦାସ ଇଷ୍ଟଦେବଙ୍କ ରୂପ ବର୍ଣ୍ଣନା ଆରମ୍ଭିଲେ ।

ସମଗ୍ର ବର୍ଣ୍ଣନା ଶ୍ରବଣାନ୍ତେ ଉକ୍ତ ବାଳକ ପ୍ରସାଦ ପାତ୍ରକୁ ତୁଳସୀ ଦାସଙ୍କ ସମୀପରେ ସ୍ଥାପନ କରି କହିଲେ, "ମୁଁ ହିଁ ରାମ । ଜଗନ୍ନାଥ ରୂପ ମଧ୍ୟ ମୋର । ଆଗାମୀ ଉଷା କାଳରେ ମୋତେ ଦର୍ଶନ କର ।" ପରେ ପରେ ବାଳକ ଅଦୃଶ୍ୟ ହୋଇଗଲେ ।

ଭକ୍ତିର ସହିତ ତୁଳସୀ ଦାସ ପ୍ରସାଦ ସେବନ କଲେ । ପରବର୍ତ୍ତୀ ବ୍ରାହ୍ମମୁହୂର୍ତ୍ତରେ ସେ ପୁନର୍ବାର ମନ୍ଦିରରେ ପ୍ରବେଶ କଲେ । ସେଠାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ସ୍ଥାନରେ ରାମ, ଲକ୍ଷ୍ମଣ, ଜାନକୀଙ୍କ ଦର୍ଶନର ସୌଭାଗ୍ୟପ୍ରାପ୍ତ ହେଲେ । "ହେ ଭଗବାନ ! ମୁଁ ପାପିଷ୍ଠ ତୁମ ରୂପର ବୈବିଧ ଜାଣିବା ପାଇଁ ଆଦୌ ଯୋଗ୍ୟ ନୁହେଁ ।" ଏପରି କହି ତୁଳସୀ ଦାସ ଶ୍ରୀରାମଙ୍କୁ ବହୁ ପ୍ରକାରର ସ୍ତୁତି କରିବାରେ ନିଜକୁ ବ୍ୟାପୃତ କଲେ ।

*ଶ୍ରୀଅରବିନ୍ଦ ଶିକ୍ଷା ଗବେଷଣା କେନ୍ଦ୍ର, ବୁର୍ଲା,*
*ସମ୍ବଲପୁର- ୭୬୮୦୧୭*

ଅଛି ନାହିଁର ଉତ୍ତର --

୧ । ହରିଣର ଗୋଟିଏ ଶିଂଘ ଭଙ୍ଗା, ୨ । ଗୋଟିଏ ପାହାଡ଼ ନାହିଁ, ୩ । ହାତୀର ଗୋଟିଏ ଦାନ୍ତ ନାହିଁ, ୪ । ବାଜାର ମଝିରେ କଳା ନାହିଁ, ୫ । ଠେକୁଆର ବେକପଟି ଅଲଗା, ୬ । କୋକିଶିଆଳିର ଗୋଟିଏ କାନ ନାହିଁ, ୭ । ମାଙ୍କଡ଼ର ଗାମୁଛା ଭିନ୍ନ ।

# ଭାରତରେ ପ୍ରଚଳିତ କେତେକ ହିନ୍ଦୁ ପାରମ୍ପରିକ ପ୍ରଥା



ଆମେ ଯେତେବେଳେ ମନ୍ଦିରକୁ ଯାଉ, ସେତେବେଳେ ଠାକୁରଙ୍କ ଆଗରେ ଝୁଲୁଥିବା ଘଣ୍ଟି ବଜାଉ । ଶାସ୍ତ୍ର ଅନୁସାରେ ଏହାକୁ ବଜାଇବା ଦ୍ୱାରା ମନ୍ଦିରରେ ଥିବା ସମସ୍ତ କୁଶକ୍ତି ଚାଲିଯା'ନ୍ତି ଏବଂ ଇଶ୍ୱରଙ୍କୁ ଘଣ୍ଟି ଶବ୍ଦ ଭଲଲାଗେ ।

ମାତ୍ର ଏହାର ବିଜ୍ଞାନସମ୍ମତ କାରଣ ହେଲା- ଏହି ଶବ୍ଦ ଆମର ମସ୍ତିଷ୍କକୁ ପରିଷ୍କାର କରେ ଏବଂ ଆଧାତ୍ମିକ ପରିବେଶ ପ୍ରତି ଆମର ଧ୍ୟାନକୁ କେନ୍ଦ୍ରୀଭୂତ କରେ । ଏହି ଘଣ୍ଟି ଏଭଳି ଭାବରେ ନିର୍ମିତ ଯେ ଏହା ବାଜିଲାକ୍ଷଣି ଆମର ମସ୍ତିଷ୍କର ବାମ ଏବଂ ଦକ୍ଷିଣଭାଗ ମଧ୍ୟରେ ସମତା ରଖିପାରେ ।

ଏହି ଶବ୍ଦ ୭ ସେକେଣ୍ଡ ପର୍ଯ୍ୟନ୍ତ ପ୍ରତିଧ୍ୱନି ସୃଷ୍ଟି କରିଥାଏ । ଏହି ସମୟତକ ତାହା ଆମ ଶରୀରର ୭ଟି ଆରୋଗ୍ୟ କେନ୍ଦ୍ରକୁ କାର୍ଯ୍ୟକ୍ଷମ କରିପାରେ । ଏହାଦ୍ୱାରା ଆମ ମସ୍ତିଷ୍କରେ ଥିବା ସମସ୍ତ ବିରୋଧାଭାସ ଦୂର ହୋଇଯାଏ ।




ଯେ କୌଣସି ଦିନ ଖବର କାଗଜ ଲେଉଟାଇଲେ ଆଖିରେ ପଡ଼େ ଦୁର୍ଘଟଣାର ସମ୍ବାଦ । ଏହି ଦୁର୍ଘଟଣାକୁ ଆମେ ଦୁଇ ଶ୍ରେଣୀରେ ବିଭକ୍ତ କରିପାରୁ– ୧) ଦୈବୀ ଦୁର୍ଘଟଣା, ୨) ମନୁଷ୍ୟକୃତ ଦୁର୍ଘଟଣା । ଭୂମିକମ୍ପ, ବନ୍ୟା, ବାତ୍ୟା, ଅଗ୍ନି-ଉତ୍ପାତ, ବରଫ ସ୍ଖଳନ ଆଦି ପ୍ରଥମ ଶ୍ରେଣୀର, ଯେହେତୁ ମନୁଷ୍ୟର ଏ ସବୁରେ କିଛି ହାତ ନ ଥାଏ । ଏହା କେତେବେଳେ ଘଟିବ ଜାଣି ହୁଏ ନାହିଁ । କିନ୍ତୁ ଯେତେବେଳେ ଏସବୁ ପ୍ରାକୃତିକ ବିପ୍ରାତ ଘଟେ, ବହୁ ଧନଜୀବନ ନଷ୍ଟ ହୁଏ । ସେତେବେଳେ ବିପନ୍ନ ଲୋକମାନଙ୍କୁ ସାହାଯ୍ୟ କରିବା ବ୍ୟତୀତ ଆଉ କିଛି କରାଯାଇ ପାରେନାହିଁ ।

'ମନୁଷ୍ୟକୃତ ଦୁର୍ଘଟଣା'–ଏ କଥାଟା ଆକ୍ଷରିକ ଅର୍ଥରେ ଠିକ୍ ନ ହୋଇପାରେ, କାରଣ ଦେଖାଯାଏ– ମନୁଷ୍ୟ ଜାଣିଶୁଣି ଦୁର୍ଘଟଣା ଘଟାଇ ନ ଥାଏ । ଧରନ୍ତୁ, ନଈ ମଝିରେ ଡଙ୍ଗାଟା ବୁଡ଼ିଗଲା, ରାସ୍ତାରେ ଯାଉ ଯାଉ ଗାଡ଼ି ସଙ୍ଗେ ଧକ୍‌କା ଲାଗିଲା, ରେଳଗାଡ଼ି ଲାଇନଚ୍ୟୁତ ହେଲା, ଉଡ଼ନ୍ତା ବିମାନରେ ନିଆଁ ଲାଗିଗଲା କି କଳକାରଖାନାରେ ଦୁର୍ଘଟଣା ଘଟିବାରୁ ବହୁ ଲୋକ ମରିଗଲେ, (ଯେପରି ଭୋପାଳରେ ଘଟିଥିଲା)– ଏସବୁ ମନୁଷ୍ୟର ଇଚ୍ଛାକୃତ ନୁହେଁ ସତ, କିନ୍ତୁ ଅନୁସଂଧାନ କଲେ ଦେଖାଯିବ ଅଧିକାଂଶ ସ୍ଥଳରେ ମନୁଷ୍ୟର ଅଜ୍ଞତା, ଅବହେଳା ଓ ଅସାବଧାନତାରୁ ଏସବୁ ଘଟିଥାଏ । ନୌକାଡୁବିର ପ୍ରଧାନ କାରଣ ଡଙ୍ଗାରେ ଯେତିକି ଲୋକ ବସିବାର କଥା, ତା' ଅପେକ୍ଷା ବେଶୀ ଲୋକ ବସିଥିବା ହେତୁ ସୁଅ ମୁହଁରେ ନାଉରୀ ନୌକାକୁ ଆୟତ୍ତ କରିପାରେ ନାହିଁ । ସାମାନ୍ୟ ବ୍ୟତିକ୍ରମ ହେଲେ ନୌକା ଓଲଟିପଡ଼େ । ଏହି କାରଣରୁ ମଧ୍ୟ ବହୁତ ବସ୍ ଦୁର୍ଘଟଣା ଘଟେ । ଟ୍ରକଚାଳକମାନେ ନିଶା ଖାଇ ଦ୍ରୁତ ବେଗରେ ଗାଡ଼ି ଚଳାଉଥିବା ଅବସ୍ଥାରେ ଅନ୍ୟ ଗାଡ଼ିକୁ ଧକ୍‌କା ଦିଅନ୍ତି ବା ରାସ୍ତା କଡ଼ ଗଛରେ ପିଟି ହୋଇଯାଆନ୍ତି । ଯାତ୍ରା ଓ ମେଳାମାନଙ୍କରେ ଦଳାଚକଟାରେ ବହୁ ଲୋକ ମରିଯିବା ବେଳେବେଳେ ଶୁଣାଯାଏ । ଏହା ମଧ୍ୟ ମନୁଷ୍ୟକୃତ ଦୁର୍ଘଟଣା ।

ଅଧିକାଂଶ ଘରପୋଡ଼ିର କାରଣ ସ୍ତ୍ରୀଲୋକ ବା ପିଲାମାନଙ୍କର ଅସାବଧାନତା । କେତେକ ସ୍ଥଳରେ ଦେଖାଯାଏ, ଅଜ୍ଞତା ହେତୁ ଗାଁର ଲୋକେ ବିଜୁଳିତାର ସଂସ୍ପର୍ଶରେ ଆସି ବିଦ୍ୟୁତ ଆଘାତରେ ମରନ୍ତି । ରୋଷେଇ କରୁଥିବାବେଳେ ଗ୍ୟାସ୍ ବା ଷ୍ଟୋଭ୍‌ରେ ପୋଡ଼ି ହୋଇ କେତେକ ଲୋକ ମୃତାହତ ହୁଅନ୍ତି । ଗାଧୋଇବାବେଳେ ଗଭୀର ଜଳକୁ ଖସିଯାଇ ଓ ସେମାନଙ୍କୁ ରକ୍ଷା କରିବାକୁ ଯାଇ ବହୁ ଲୋକ ବୁଡ଼ି ମରିବାର ଶୁଣାଯାଏ । ତେଣୁ ଇଚ୍ଛାକୃତ ନ ହେଲେ ମଧ୍ୟ ଏସବୁ କ୍ଷେତ୍ରରେ ମନୁଷ୍ୟର ଅଜ୍ଞତା ଓ ଅସାବଧାନତା ଯେ ବହୁ ଦୁର୍ଘଟଣା ପାଇଁ ଦାୟୀ, ଏହା ଅସ୍ୱୀକାର କରାଯାଇ ନ ପାରେ ।

ମୁଁ ଗୋଟିଏ ସତ୍ୟ ଘଟଣା ଜାଣେ, ଯେଉଁଠି ଜଣେ ବୃଦ୍ଧା ନିଜର ଅସାବଧାନତା ଯୋଗୁ ଦୃଷ୍ଟିଶକ୍ତି ହରାଇଥିଲେ । ଗୋଟିଏ ଛୋଟ ପିଲା ହାତରେ ଟାଣ ବାଉଁଶ କାଠିଟିଏ ଧରି ତାଙ୍କ କୋଳରେ ବସି ଖେଳୁଥିବାବେଳେ କାଠିଟି ତାଙ୍କ ଆଖିରେ ଖେଞ୍ଚି ହୋଇଗଲା ଓ ସେ ସବୁଦିନ ପାଇଁ ଅନ୍ଧୁଣୀ ହୋଇଗଲେ । ଆଉ ଜଣେ ସ୍ତ୍ରୀଲୋକ ଚୁଲିରୁ ପାଉଁଶ କାଢ଼ି ବାଡ଼ିଆଡ଼େ ଗଦେଇ ଦେଇଥିଲେ । ପାଉଁଶରେ ରହିଥିବା ନିଆଁ ରାତିରେ ପବନରେ ଉଡ଼ି ପ୍ରଥମେ କୁଟାଗଦା ଓ ପରେ

ଚାଳରେ ପଡ଼ିବାରୁ ଘର ପୋଡ଼ିଗଲା । ମୋ ଘର ପାଖରେ ଥରେ ଜଣେ ଲୋକ ହାତରେ ଦରପୋଡ଼ା ସିଗାରେଟ୍ ଧରି ପାଖରେ ସାନଝିଅକୁ ଶୁଆଉଥିଲେ । ଏହି ଅବସ୍ଥାରେ ତାଙ୍କୁ ନିଦ ଲାଗିଗଲା । ସିଗାରେଟ୍‌ରୁ ନିଆଁ ଶେଯକୁ ବ୍ୟାପି ଯେତେବେଳେ ଚାଳ ଧରିଲା, ସେତେବେଳେ ଦରପୋଡ଼ା ଅବସ୍ଥାରେ ବାପ ଝିଅ ଡାକ୍ତରଖାନାକୁ ବୁହାହେଲେ ।

ଏ ସବୁ ବ୍ୟତୀତ ଘରେ ଘଟୁଥିବା ଛୋଟ ଛୋଟ ଦୁର୍ଘଟଣା ମଧ୍ୟ ଏଇ ଅସାବଧାନତାର ଫଳ । ଧରନ୍ତୁ ଜଣେ ପିଲା ପାଣି ପିଇ ସାରି କାଚ ଗିଲାସକୁ ଟେବୁଲ ଦାଡ଼ରେ ରଖିଦେଲା । ଗୋଟିଏ ଛୋଟ ପିଲା ସେହି ଟେବୁଲ୍ ପାଖରେ ଖେଳୁଖେଳୁ ତା' ହାତ ବାଜି ଯିବାରୁ ଗିଲାସଟି ତଳେ ପଡ଼ି ଭାଙ୍ଗିଗଲା । ଏ ଘଟଣାରେ ପ୍ରଥମ ପିଲାର ଅସାବଧାନତା ହିଁ ଗ୍ଲାସ୍ ଭାଙ୍ଗିବାର ପରୋକ୍ଷ କାରଣ । ଏପରି ବହୁ ଛୋଟ ଛୋଟ ଦୁର୍ଘଟଣା ଆମ୍ଭମାନଙ୍କର ଘରେ ଘଟିଥାଏ ।

ଦୁର୍ଘଟଣା ଛୋଟ ହେଉ ବା ବଡ଼ ହେଉ, ତାର ମୂଳ କାରଣ କୌଣସି ଲୋକର ଅବହେଳା ଓ ଅସାବଧାନତା । ଭୋପାଳ ଗ୍ୟାସ୍ ଦୁର୍ଘଟଣା ହେଉ ବା କଟକର ବିଷାକ୍ତ ମଦ ବିଭୀଷିକା ହେଉ ଏହି କାରଣରୁ ଘଟିଛି ବୋଲି କୁହାଯାଇପାରେ । ରାସ୍ତାର ନିୟମ ନ ଶିଖାଇ ଆମେ ଯଦି ପିଲାମାନଙ୍କୁ ରାସ୍ତାରେ ଚାଲିବାକୁ ବା ସାଇକେଲ୍ ଚଳାଇବାକୁ ଛାଡ଼ିବା, ତେବେ ବିପଦକୁ ଡାକି ଆଣିବା ପରି ହେବ । କେତେ ଦିନ ତଳେ ସମ୍ବାଦ ପ୍ରକାଶ ପାଇଥିଲା ଯେ ଜେଣେ ଲୋକ ଦାନ୍ତଖୁଣ୍ଟାଟିଏ ଗିଳି ପକାଇଥିଲା । ଏହା ତାର ପେଟକୁ ଯାଇ ଧମନୀକୁ ଫୁଟାଇଦେବାରୁ ରକ୍ତସ୍ରାବରେ ତାର ମୃତ୍ୟୁ ହେଲା । ଏହା ଉପରେ ସମ୍ପୃକ୍ତ ଡାକ୍ତର ଗୁରୁତ୍ୱ ଦେଇ ନ ଥିବାରୁ ଏପରି ଘଟିଲା ବୋଲି ମାନ୍ୟବର ବିଚାରପତି ମତ ଦେଇଥିଲେ ।

ତେଣୁ କୌଣସି ପ୍ରକାର ଅସାବଧାନତାକୁ ଲଘୁ ଦୃଷ୍ଟିରେ ଦେଖିବା ଉଚିତ ନୁହେଁ । ଛୁଞ୍ଚି, ବ୍ଲେଡ୍ ବା ଦିଆସିଲ କାଠି ଛୋଟ ହେଲେ ସୁଦ୍ଧା ଶୋଚନୀୟ ଦୁର୍ଘଟଣା ଘଟାଇ ପାରନ୍ତି । ପିଲାମାନଙ୍କୁ ଛୋଟ ଦିନୁ ସାବଧାନତା ଶିଖାଇବା ଉଚିତ । ଛୋଟପିଲାମାନଙ୍କର ଅଜ୍ଞତା ବହୁ ବିପଦର କାରଣ ହୋଇଥାଏ । ଏଣୁ ସେମାନଙ୍କର କାର୍ଯ୍ୟକଳାପ ଉପରେ ପିତାମାତାଙ୍କର ସତର୍କ ଦୃଷ୍ଟି ରଖିବା ଆବଶ୍ୟକ । ପୋଷା କୁକୁର ହେଉ ବା ବୁଲା କୁକୁର ହେଉ ସେମାନେ ଖାଉଥିବାବେଳେ ସେମାନଙ୍କ ସଙ୍ଗେ ଲାଗିଲେ କାମୁଡ଼ି ଦିଅନ୍ତି । ଏ ବିଷୟ ଛୋଟବଡ଼ ସମସ୍ତେ ଜାଣିବା ଉଚିତ ।

ଅନେକ ଲୋକ ଭାବନ୍ତି 'ଦୁର୍ଘଟଣା ତ ଦୁର୍ଘଟଣା', ତା' ଉପରେ କାହାର ହାତ ଅଛି ? ମାତ୍ର ତଳେଇ ଦେଖିଲେ ଜଣାଯିବ, ପୂର୍ବରୁ ଟିକିଏ ସାବଧାନ ରହିଲେ ଅନେକ ବିପଦରୁ ରକ୍ଷା ମଳିପାରେ ।

ଏବେ ଆଉ ଏକ ଜାତୀୟ ଦୁର୍ଘଟଣା ଦେଶରେ ମୁଣ୍ଡ ଟେକିଛି । ଅସାମାଜିକ ଲୋକମାନେ ରେଳ୍‌ରାସ୍ତାରୁ ଫିସ୍ ପ୍ଲେଟ୍ କାଢ଼ି ନେଇ, ବସ୍ ଓ ବିମାନରେ ବୋମା ଖଞ୍ଜି, ଗୋପନରେ ଲୋକଙ୍କ ଘରେ ନିଆଁ ଲଗାଇଦେଇ ଏବଂ ଏହି ଜାତୀୟ ଅନୈତିକ କାର୍ଯ୍ୟ କରି ଦୁର୍ଘଟଣା ଘଟାଉଛନ୍ତି । ଯେତେ ଜଗୁଆଳି ରଖିଲେ ସୁଦ୍ଧା ସରକାର ଏହି ଆତଙ୍କବାଦକୁ ପୂରାପୂରି ବନ୍ଦ କରିପାରିବେ ନାହିଁ । କେବଳ ଅନୈତିକତାକୁ ଦୃଢ଼ ହସ୍ତରେ ଦମନ କରି ଏବଂ ଲୋକମାନଙ୍କ ନୈତିକ ମାନକୁ ଉନ୍ନତ କରି ଏହାର ପ୍ରତିରୋଧ କରାଯାଇପାରେ ।

**ରାମକୃଷ୍ଣ ନନ୍ଦ**

---

**ଉତ୍ତର--** ୨ । ତୁ ଯା, ୩ । ଦଶନ, ୪ । ଡାଳଚିନି, ୫ । ୧+ ୨+ ୩+ ୪+ ୫+ ୬+ ୭+(୮×୯) ।

ଶ୍ରୀ କୁଞ୍ଜବିହାରୀ ସାହୁ

## ଧନୁଯାତ୍ରା ଦେଖିବା

ବିଭିନ୍ନ ସମୟରେ ବରଗଡ଼ ଜିଲ୍ଲାରେ ପାଳିତ ହେଉଥିବା ପର୍ବପର୍ବାଣି ବ୍ୟତୀତ ଏକ ନିଆରା ଲୋକନାଟକ ଅନୁଷ୍ଠିତ ହୁଏ ପୌଷ ମାସରେ, ଯାହାକି ଖୋଲାମଞ୍ଚରେ ଅଭିନୀତ ହୋଇଥାଏ । ଧନୁଯାତ୍ରା ନାମରେ ପ୍ରସିଦ୍ଧି ଲାଭ କରିଛି ଏହି ଲୋକନାଟକ । ଏହି ଧନୁଯାତ୍ରା ପୌଷମାସ ଶୁକ୍ଳପଞ୍ଚମୀ ତିଥିରୁ ଆରମ୍ଭ ହୁଏ । ଏଗାର ଦିନ ଧରି ବିଭିନ୍ନ ପ୍ରକାର ଲୀଳା ପ୍ରଦର୍ଶିତ ହୋଇ ପୌଷପୂର୍ଣ୍ଣିମା ତିଥିରେ ସମାପ୍ତ ହୁଏ ।

ବରଗଡ଼ ସହରକୁ ମଥୁରା ନଗରୀ, ଅମ୍ବାପାଲି ଗାଁକୁ ଗୋପପୁର ଏବଂ ଦୁଇସ୍ଥାନକୁ ସଂଯୋଗ କରୁଥିବା 'ଜୀରା' ନଦୀକୁ ଯମୁନା ନଦୀ ରୂପେ ପରିକଳ୍ପନା କରାଯାଇଥାଏ । ଯାତ୍ରା ଆରମ୍ଭର ବହୁ ଆଗରୁ ଅଭିନେତା, ଅଭିନେତ୍ରୀଙ୍କର ଚୟନ ପ୍ରକ୍ରିୟା, ପୋଲିସ ସୁରକ୍ଷା ପରି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟର ବ୍ୟବସ୍ଥା କରାଯାଏ ।

ମଥୁରା ନଗରୀରେ ଧନୁଯାତ୍ରା ମହୋତ୍ସବରେ ଉଦ୍‌ଘାଟନୀ ପର୍ବ ଆରମ୍ଭ ହୁଏ । ତତ୍‌ସହିତ ସମଲେଶ୍ୱରୀ ମନ୍ଦିରରୁ କଳାକାରଙ୍କର ଶୋଭାଯାତ୍ରା, ଉଗ୍ରସେନଙ୍କର ନିର୍ଦ୍ଦେଶରେ ଦେବକୀ-ବସୁଦେବଙ୍କ ବିବାହ, ଉଗ୍ରସେନଙ୍କର ଗାଦିଚ୍ୟୁତ ପରେ କଂସର ରାଜ୍ୟାଭିଷେକ କାର୍ଯ୍ୟ ନାଟ୍ୟାଭିନୟରେ ଆରମ୍ଭ ହୋଇଥାଏ । ସେହିପରି ଗୋପପୁରରେ ନନ୍ଦରାଜା ଓ ନନ୍ଦରାଣୀଙ୍କ ଭାଗବତପ୍ରାପ୍ତି ପାଇଁ ପୂଜାର୍ଚ୍ଚନା କାର୍ଯ୍ୟସୂଚୀରୁ ଅନ୍ୟାନ୍ୟ କାର୍ଯ୍ୟକ୍ରମ ଆରମ୍ଭ ହୁଏ । ଗୋପପୁରରେ ପ୍ରତିଘର ଲିପାପୋଛା ତଥା ଚିତ୍ର/ଝୋଟିରେ ସୁନ୍ଦର ଦିଶେ । ସମସ୍ତ ଗ୍ରାମବାସୀ ଭକ୍ତି ସହକାରେ ଗୋପପୁରରେ ଉଲ୍ଲସିତ ହୋଇ ଉଠନ୍ତି ।

ବରଗଡ଼ର ହାଟପଦା (ଯେଉଁଠି ନିୟମିତ ହାଟ ବସେ)ଠାରେ କଂସର ଦରବାର । ଏହି ଦରବାରର ଉଚ୍ଚତା ୭୦ ଫୁଟ୍ ଓ ଚଉଡ଼ା ୧୨୦ ଫୁଟ୍ । ସିଂହାସନଟି ଦେଖିବାକୁ ଖୁବ୍ ଚମତ୍କାର । ରାଜବୋରାସମ୍ବର (ପଦମ୍‌ପୁର)ର କୁଶଳୀ କାରିଗରମାନେ ଏହି ଦରବାର ନିର୍ମାଣରେ ଲାଗି ପଡ଼ନ୍ତି । ସେହିପରି ନିଶାମଣି ସ୍କୁଲ୍ ପଡ଼ିଆରେ କଂସ ମହାରାଜାଙ୍କ ରଙ୍ଗମହଲ ଶୋଭାପାଏ । ନୃତ୍ୟଗୀତର ସମାରୋହର ଏହି ମଞ୍ଚର ଉଚ୍ଚତା ୫୦ ଫୁଟ୍ ଓ ଚଉଡ଼ା ୭୦ ଫୁଟ୍ । ସୋହେଲା ଓ ପାଣିମୋରା ଅଞ୍ଚଳର କାରିଗରମାନେ ଏହି ମଞ୍ଚ ଦାୟିତ୍ୱରେ ଥା'ନ୍ତି । ସୁସଜ୍ଜିତ ଏ ମଞ୍ଚରେ ମହାରାଜାଙ୍କ ଉପସ୍ଥିତିରେ ସ୍ଥାନୀୟ କଳାକାରମାନଙ୍କ ସମେତ ଅନ୍ତର୍ଜାତୀୟ ସ୍ତରୀୟ ଲୋକନୃତ୍ୟ ଶିଳ୍ପୀମାନେ କଳା ପ୍ରଦର୍ଶନ କରିଥାନ୍ତି । ସନ୍ଧ୍ୟାରେ ଏ କାର୍ଯ୍ୟକ୍ରମ ଚାଲୁରହେ । ମଥୁରା ନଗରୀରେ ହେଉଥିବା ନାଟ୍ୟାଭିନୟ ଏବଂ ଗୋପପୁରରେ ଅନୁଷ୍ଠିତ ହେଉଥିବା ବିଭିନ୍ନ ଲୀଳାର ନାଟ୍ୟାଭିନୟ ପାଇଁ ପୃଥକ୍ ଭାବେ ନିର୍ଦ୍ଦେଶକ ବଛା ଯାଇଥାଆନ୍ତି । ବେଶଭୂଷା ଓ ପରିପାଟୀ ପାଇଁ ସ୍ୱତନ୍ତ୍ର ବ୍ୟକ୍ତି ନିଯୁକ୍ତ ରହନ୍ତି । ସେମାନେ କଳାକାରମାନଙ୍କୁ ଠିକ୍ ଭାବେ ବେଶଭୂଷାରେ ଆଭୂଷିତ କରାଇଥାନ୍ତି ।

ରଙ୍ଗମହଲରେ କଂସ ମହାରାଜା, ମହାମନ୍ତ୍ରୀ ଶକ୍ରାଜିତ୍ ଏବଂ ଅନ୍ୟାନ୍ୟ ପାରିଷଦବର୍ଗଙ୍କ ସହ ଉପସ୍ଥିତ ରୁହନ୍ତି । ନିର୍ଦ୍ଦେଶମୁତାବକ ଆମନ୍ତ୍ରିତ ହୋଇ କଳାକାର-ମାନେ ସ୍ୱ ସ୍ୱ କଳାନୈପୁଣ୍ୟ ପ୍ରଦର୍ଶନ କରିଥାନ୍ତି । ପଡ଼ିଆରେ ହସ୍ତୀ ଓ ଓଟମାନେ ବିଚରଣ କଲାବେଳେ ଛୋଟ ଛୋଟ ପିଲାମାନେ ସେମାନଙ୍କ ପୃଷ୍ଠଭାଗରେ ଉପବିଷ୍ଟ ହୋଇ ମଜା ଉଠାଇଥାନ୍ତି । ରଂଗିନ୍ ଆଲୋକମାଳା ଓ ବାଦ୍ୟର ତାଳରେ ସ୍ଥାନଟି ଚଳଚଞ୍ଚଳ ଦିଶେ । ଦର୍ଶକମାନେ ଉପସ୍ଥିତ ରହି ମନଭରି ଉପଭୋଗ କରନ୍ତି ।

କିଛି ସମୟ ପରେ କଂସ ମହାରାଜ ପାତ୍ରମନ୍ତ୍ରୀଙ୍କୁ

ଧରି ହସ୍ତୀ ପୃଷ୍ଠରେ ସବାର ହୋଇ ହାଟପଦାସ୍ଥିତ ଦରବାରରେ ପଦାର୍ପଣ କରନ୍ତି । ଦେବଦେବ ମହାଦେବଙ୍କୁ ପୂଜା-ଅର୍ଚ୍ଚନା କରି ରାଜକାର୍ଯ୍ୟ ଆରମ୍ଭ କରନ୍ତି । ରାଜକୀୟ ଠାଣିରେ ସଂଳାପ ବ୍ୟକ୍ତ କରି ଦର୍ଶକ (ମଥୁରା ନଗରୀର ପ୍ରଜା)ମାନଙ୍କୁ ଆକୃଷ୍ଟ କରନ୍ତି । ରାଜଦରବାରକୁ ଆସିବା ସମୟରେ ହାଟପଦାର ଦୁଇପାର୍ଶ୍ୱରେ ଅଗଣିତ ଦର୍ଶକ ସ୍ୱାଗତ ଜଣାନ୍ତି । ହସ୍ତୀ ପୃଷ୍ଠରୁ ମଞ୍ଚ ଉପରକୁ ଯାଇ ପ୍ରତ୍ୟେକ ରାତ୍ରୀର କାର୍ଯ୍ୟସୂଚୀ ଅନୁଯାୟୀ ଅଭିନୟ କରନ୍ତି । ନିମନ୍ତ୍ରିତ ହୋଇ ଆସିଥିବା ବିଶିଷ୍ଟ ଅତିଥିଙ୍କୁ ନିକଟରେ ସ୍ଥାନ ଦିଅନ୍ତି ଏବଂ କିଛି ବକ୍ତବ୍ୟ ବାଢ଼ିବାକୁ ଆଦେଶ ଦିଅନ୍ତି । ଆଦେଶକୁ ଅମାନ୍ୟ କଲେ ଯଥୋଚିତ ଦଣ୍ଡବିଧାନ କରନ୍ତି । ସେଥିପାଇଁ ଅତିଥି ଯେତେ ବଡ଼ ଅଧିକାରୀ ହୋଇଥିଲେ ବି ସେ ସମୟରେ କଂସ ମହାରାଜାଙ୍କର ଅଧୀନତା ସ୍ୱୀକାର କରନ୍ତି । ନିଜର ବିଭାଗୀୟ କାର୍ଯ୍ୟକୁ ସୂଚାରୁରୂପେ ତୁଲାଇବାକୁ ପ୍ରତିଶ୍ରୁତି ଦିଅନ୍ତି । ସସମ୍ମାନ କଂସ ମହାରାଜ ସନ୍ତୋଷପୂର୍ବକ ଅତିଥିଙ୍କୁ ମେଲାଣି ଦିଅନ୍ତି । ମହାରାଜ କଂସ ଓ ଅତିଥିଙ୍କ ବାକ୍ୟ ବିନିମୟକୁ ଦର୍ଶକମାନେ ମନଭରି ଶୁଣିଥାନ୍ତି ।

ଅମ୍ବାପାଲି ଗ୍ରାମ (ଗୋପପୁର)ରେ ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା, କାଳୀୟଦଳନ, ଗୋବର୍ଦ୍ଧନ ଧାରଣ, ପୁତନା, ଅଘା, ବଘା ଇତ୍ୟାଦି ଅସୁରଙ୍କ ନିଧନ, କଦମ୍ବ ମୂଳରେ କେଳି, ବସ୍ତ୍ରହରଣ ପ୍ରଭୃତି ଦୃଶ୍ୟକୁ କଳାକାରମାନେ ଅଭିନୟରେ ଦେଖାଇଥାନ୍ତି । ଯେତେବେଳେ ଅକ୍ରୁର ଗୋପପୁରରେ ପହଞ୍ଚିଯାଏ, ଗୋପପୁରବାସୀ କୃଷ୍ଣଙ୍କ କଥା ଭାବି ଭାବି କାନ୍ଦି ପକାନ୍ତି । କୃଷ୍ଣପ୍ରେମୀ ଅକ୍ରୁର ହେଉଛନ୍ତି କଂସର ପୁରାତନ ମନ୍ତ୍ରୀ, ବିଚକ୍ଷଣ ବୁଦ୍ଧି ତାଙ୍କର । ସେ ଯମୁନାନଦୀ ପାର ହୋଇ ନଦୀବାଲିରେ ଗଲାବେଳେ ଶ୍ରୀକୃଷ୍ଣଙ୍କ ପାଦଚିହ୍ନ ଦେଖନ୍ତି । ଖୁସି ହୋଇ ନଦୀବାଲିକୁ ମଥାରେ ବୋଳି ଦିଅନ୍ତି । କୃଷ୍ଣ-ବଳରାମଙ୍କୁ ରଥରେ ବସାଇ ଅକ୍ରୁର ମଥୁରା ନଗରୀକୁ ମୁହାଁଇଲାବେଳକୁ ଗୋପପୁରବାସୀ ଭୋ.....ଭୋ ହୋଇ କାନ୍ଦି ପକାନ୍ତି । ସମସ୍ତଙ୍କ ଆଖିରେ ଲୁହ ।

କୃଷ୍ଣ-ବଳରାମ ମଥୁରା ନଗରୀ ବୁଲିଲାବେଳେ ଦର୍ଶକ/ଭକ୍ତଗଣ ଆଶୀର୍ବାଦ ପାଇବା ପାଇଁ ପୂଜା କରନ୍ତି । ରାସ୍ତାଘାଟ ସବୁଠି ଠାକୁରଙ୍କ ଜୟଗାନ ।

ରାଜଦରବାରରେ ଦୁଇ ଭଣଜା (କୃଷ୍ଣ-ବଳରାମ)ଙ୍କୁ ଦେଖି ମନେମନେ ମାମୁ କଂସାସୁର ଖୁସି ହେଲେ ବି ପରେ ହୀନବଳ ହୋଇପଡ଼େ । ଘମାଘୋଟ ମୁଷ୍ଟିଯୁଦ୍ଧ ହୁଏ । ଏହି ଦୃଶ୍ୟକୁ ମଥୁରାର ସମସ୍ତ ଦର୍ଶକ ଅପଲକ ନୟନରେ ଦେଖୁଥାନ୍ତି । ଯୁଦ୍ଧରେ ହାରି ମଞ୍ଚାରୁ ତଳେ ପଡ଼ିଯାନ୍ତି କଂସାସୁର ଏବଂ ତାଙ୍କର ମୃତ୍ୟୁ ହୁଏ । ଅନ୍ୟାୟ, ଅତ୍ୟାଚର ଉପରେ ସତ୍ୟ, ନ୍ୟାୟର ବିଜୟ ଘଟେ ।

ନାଟକ ସରେ ଉଗ୍ରସେନଙ୍କ ରାଜ୍ୟାଭିଷେକ ପରେ । ସତେ ଯେପରି ସମସ୍ତେ ଅନୁଭବ କରିଥା'ନ୍ତି ଦ୍ୱାପର ଯୁଗର କଥା-କାହାଣୀକୁ । ଯାତ୍ରାର ପରଦିନ କଂସ ତୀର୍ଥଭୂମି ପୁରୀରେ ଜଗନ୍ନାଥଙ୍କୁ ଦର୍ଶନ କରନ୍ତି । ଏହା ବିଧେୟ ।

ପ୍ରକୃତରେ ବରଗଡ଼ରେ ଅନୁଷ୍ଠିତ (ମଥୁରା ନଗରୀ, ଗୋପପୁର) ଧନୁଯାତ୍ରା ନିଜ ଆଖିରେ ନ ଦେଖିଲେ ବିଶ୍ୱାସ କରିହେବନି । ୧୧ ଦିନର ଏହି ପୌରାଣିକ ଲୋକନାଟକ ଆଜି ପର୍ଯ୍ୟନ୍ତ ବଞ୍ଚି ରହିଛି । ଏହା ନିଶ୍ଚିତ ଭାବେ ଆମ ସମସ୍ତଙ୍କ ପାଇଁ ଖୁସି ଓ ଗର୍ବର ବାର୍ତ୍ତା ବହନ କରେ ।

ଏହି ଧନୁଯାତ୍ରାକୁ ଉପଭୋଗ କରିବା ପାଇଁ ପୌଷମାସରେ ବରଗଡ଼ ଜିଲ୍ଲାକୁ ବୁଲି ଆସିବା ସଭିଏଁ ।

*ଏଲ୍.ଆଇ.ଜି- ୧୫, ନୟାପଲ୍ଲୀ, ବ୍ରିଟ୍ କଲୋନୀ, ଭୁବନେଶ୍ୱର*

*(ଏହି ବିଷୟର କୋତୋଟି ଚିତ୍ର ପ୍ରଚ୍ଛଦର ଭିତର ପୃଷ୍ଠାରେ ଦିଆହୋଇଛି ।)*

❋❋

# କଳା

ଶ୍ରୀ ଶଶିକାନ୍ତ ବେହେରା



କିଟିମିଟି କଳା କୋଇଲିର ଦେହ ଲୁଚେ ସିନା ଗଛ ପତରେ
କଣ୍ଠଟି ତାହାର କେଡ଼େ ସୁମଧୁର ଗାଏ କୁହୁକୁହୁ ଗୀତରେ
କଳାଛିଟା ସିନା ଅସନା ଲାଗଇ ପଡ଼ିଗଲେ ଦେହ ହାତରେ
ହେଲେ ଭଲଲାଗେ ସେଇ କଳାଟିକେ ଲାଗିଥିଲେ ଆଖି ପତାରେ
କଳାଜାଇ ଥିଲେ ଓଠରେ
କେଡ଼େ ସୁନ୍ଦରିଆ ସାଜଇ ମୁହଁକୁ ଦେଖିଦେଲେ ଆଖି ନ ଫେରେ ।

ପିଚିପିଚି କଳା କାଦୁଅ ପଙ୍କକୁ ଦେଖିଲେ ଅସନା ଲାଗଇ
ସେଇ କଳା ପଙ୍କୁ ପଦୁଅଁ ଜନମ ଲାଗେ ଦେବୀ ପୂଜା ପାଇଁ
କାଳି ଝିଅ ସିନା ବାସନ୍ଦ ପଡ଼ଇ ଗୋରା ଝିଅ ଆଗ ବାହା
ହେଲେ କାଳିଝିଅ ଗୁଣବତୀ ଥିଲେ ଗୋରୀ ପାଏ ନାହିଁ ରାହା
ଜଗନ୍ନାଥ ଦିଅଁ କଳା
କାଳିଆ ଓଠକୁ ସୁନ୍ଦର ମାନଇ କଳା କଳା ଚକାଡୋଳା ।





ଧଳା କାଗଜକୁ ନଷ୍ଟ କରିଦିଏ କାଳି ବୁନ୍ଦେ ପଡ଼ିଗଲେ
ସୁନ୍ଦର ଦିଶଇ ସେଇ କାଳି ନେଇ ଛବିଟିଏ ଆଙ୍କିଦେଲେ
ଧଳା କାଗଜରେ କଳା ଅକ୍ଷରରେ ବହି ଯେତେ ଛପା ହୁଏ
କଳା ରାତିଟାର ଅମା ଅନ୍ଧାରକୁ ଜହ୍ନଟେ ଦୂରେଇଦିଏ
କଳାମେଘ ଆକାଶର
ଅସରା ଅସରା ବରଷିଯାଏ ସେ ଦିଶେ ସିନା ଭୟଙ୍କର ।
କଳା ରଂଗ ସିନା ଅଶୁଭ ଲକ୍ଷଣ କଳାର ଆଦର ବହୁତ
କଳା କେତେବେଳେ କଳଙ୍କ ଲଗାଏ ନ କରିପାରିଲେ ଆୟତ୍ତ
କଳା ଗୁଣ ଥିଲେ ବିକଶିତ ହୁଏ ବୋଲାଏ ସେ କଳାକାର
କଳାର ବିକାଶ କଲେ କଳାକାର ସବୁଠି ତା'ର ଆଦର
କଳାଧନ ଥିଲେ କାଳ
ଷୋଳକଳା ଥିଲେ ଏଇ ଦୁନିଆରେ ସବୁଠାରେ ଖେଳେ ଖେଳ ।

*ପରମାନନ୍ଦପୁର, ବାହାବଳପୁର, ତିହିଡ଼ି, ଭଦ୍ରକ*

**

# ମହାଭାରତ କଳି ତୁଟାଇଲା

ଶ୍ରୀ ନନ୍ଦକିଶୋର ସିଂହ

ଜଣେ ପଣ୍ଡିତ ଥିଲେ । ସେ ଉଭୟ ସଂସ୍କୃତ ଓ ତାମିଲ ଭାଷାରେ ଖୁବ୍ ଦକ୍ଷ ଥିଲେ । ତାଂକର ନାମ ଶ୍ରୀ ବିଲ୍ଲି ପୁରାଇ । ତାଙ୍କର ଜ୍ଞାନଗରିବା ପାଇଁ ସମସ୍ତେ ତାଂକୁ ସମ୍ମାନ ଜଣାଉଥିଲେ ।

ବଡ଼ ବଡ଼ ଲୋକେ ମଧ ବେଳେବେଳେ ଭୁଲ୍ କରିଥାନ୍ତି । ବିଲ୍ଲି ମଧ ତାଙ୍କ ଜୀବନରେ ସେହିଭଳି ଏକ ଭୁଲ୍ କରିବାକୁ ଯାଉଥିଲେ ।

ଥରକର କଥା– ପୈତୃକ ସମ୍ପତ୍ତିର ଭାଗବଣ୍ଟାକୁ ନେଇ ତାଙ୍କ ସାନଭାଇଙ୍କର ସଙ୍ଗେ ତାଙ୍କର ମତଭେଦ ହେଲା । ମତଭେଦରୁ କଳିତକରାଳ ଯାଏଁ ଗଲା । ଶେଷରେ ଏହାର ସମାଧାନ ପାଇଁ ସେ ରାଜଦରବାରରେ ପହଞ୍ଚିଲେ । ରାଜା ତ ଆଗରୁ ବିଲ୍ଲି ପୁରାଇଙ୍କ ନାଆଁ ଶୁଣିଥିଲେ । ତାଙ୍କର ପାଣ୍ଡିତ୍ୟ କଥାର ବି ପରିଚୟ ପାଇଥିଲେ । ଏଭଳି ବ୍ୟକ୍ତି ପୁଣି ସାମାନ୍ୟ ଜମିବାଡ଼ି ଭାଗବଣ୍ଟରା କଥାରେ ରାଜଦରବାର ଆସିବା ଦେଖି ଆଶ୍ଚର୍ଯ୍ୟ ହେଲେ ।

ରାଜା କିଛି ସମୟ ଚିନ୍ତା କଲେ । ତା'ପରେ କହିଲେ "ପଣ୍ଡିତ ମହାଶୟ, ମୁଁ ଆପଣଙ୍କର ବିଚାର ନିଶ୍ଚୟ କରିବି । କିନ୍ତୁ ତା ଆଗରୁ ଆପଣଙ୍କୁ ଗୋଟେ କାମ କରିବାକୁ ପଡ଼ିବ ।"

ବିଲ୍ଲି ପୁରାଇ କହିଲେ, "ଶୁଣନ୍ତୁ ମଣିମା ମୁଁ ଆପଣଙ୍କ କଥା ଅବଶ୍ୟ ରଖିବି । କାମଟା କ'ଣ କୁହନ୍ତୁ ।"

ରାଜା କହିଲେ, "ଆପଣଙ୍କ ପାଇଁ କାମଟା ଖୁବ୍ ସହଜ । ଆପଣ ବ୍ୟାସଦେବଙ୍କ ରଚିତ ସଂସ୍କୃତ ମହାଭାରତକୁ ତାମିଲ୍ ଭାଷାରେ ଅନୁବାଦ କରିଦିଅନ୍ତୁ । ଏହି ମୋର ଏକମାତ୍ର ଅନୁରୋଧ । ଏହାର ତାମିଲ୍ ଭାଷାରେ ଅନୁବାଦକୁ ମୋ ରାଜ୍ୟରେ ପ୍ରଜାମାନେ ସହଜରେ ପଢ଼ିପାରିବେ ଆଉ ବୁଝି ମଧ୍ୟ ପାରିବେ ।" ରାଜାଙ୍କ ଅନୁରୋଧକୁ ଆଦେଶ ବୋଲି ମନେକରି ପଣ୍ଡିତ ମହାଶୟ ଘରକୁ ଫେରି ମହାଭାରତକୁ ତାମିଲ୍ ଭାଷାରେ ଅନୁବାଦ କାମରେ ବ୍ୟସ୍ତ ରହିଲେ ।



ଦିନରାତି ପରିଶ୍ରମ କରି ସେ ଅଳ୍ପ ଦିନରେ ଅନୁବାଦ କାମ ସାରିଦେଲେ । ତା'ପରେ ଦରବାରକୁ ଯାଇ ମହାଭାରତର ଅନୁବାଦ ଦେବା ପାଇଁ ମନସ୍ଥ କଲେ; କିନ୍ତୁ ଦରବାରକୁ ଯିବା ପୂର୍ବରୁ ତାଙ୍କ ମନରେ ଏକ ପ୍ରଶ୍ନ ଉଙ୍କି ମାରିଲା । ରାଜା ମହାଭାରତକୁ ଅନୁବାଦ କରେଇବା ପଛରେ ମୋ ଆପତ୍ତି ଅଭିଯୋଗର କି ସମ୍ପର୍କ ! ଏକଥା ସେ ଭାବିବା ମାତ୍ରେ ତାଙ୍କ ମନକୁ ଏ ଭାବନାର ଉତ୍ତର ମଧ୍ୟ ମିଳିଗଲା ।

ମହାଭାରତ ଯୁଦ୍ଧ ପଛରେ ଥିଲା କୌରବ ପାଣ୍ଡବ

ମଧ୍ୟରେ ସମ୍ପତ୍ତିକୁ ନେଇ କଳିଗୋଳ । ପଶାଖେଳ ଖାଲି ଏକ ବାହାନା ଥିଲା । କୌରବ ପକ୍ଷର ଦୁର୍ଯ୍ୟୋଧନ ମାମୁ ଶକୁନିର ମନ୍ଦ ପରାମର୍ଶରେ ପଶାଖେଳ କରି ପାଣ୍ଡବମାନଙ୍କୁ ରାଜ୍ୟ ହରାଇ ବନବାସ କରାଇବାକୁ ବାଧ କରିଥିଲା । ବନବାସ ପରେ ସାନଭାଇ ଭିତରେ ସେଇ ସମ୍ପତ୍ତିକୁ ନେଇ ଗଣ୍ଡଗୋଳ ଆଉ ରକ୍ତାକ୍ତ ଯୁଦ୍ଧ ହେଲା । କେତେ ସୈନ୍ୟ ମଲେ । ଭାଇ କୁଟୁମ୍ବ ମଧ୍ୟ କୌରବକୁଳର ଅନ୍ୟାୟ ଯୋଗୁଁ ଶେଷ ହୋଇଗଲେ ଏଇ ଅଠର ଦିନ ଯୁଦ୍ଧ ଭିତରେ ।

ବିଲ୍ଲି ପୁରାଇ ଭାବିଲେ– ସମ୍ଭବତଃ ରାଜା ଚାହାନ୍ତି ଏଇ ସାମାନ୍ୟ ସମ୍ପତ୍ତି ପାଇଁ ଭାଇ ଭାଇ ଭିତରେ କଳିଗୋଳ ନ ଲାଗୁ । ନିଜି ନିଜ ଭିତରେ ବୁଝାମଣା ହୋଇ ଶେଷ ହେଉ ବିବାଦ ।

ଏବେ ବିଲ୍ଲି ପୁରାଇ ନିଜର ଭୁଲ୍ ବୁଝିପାରିଲେ । ରାଜାଙ୍କ ପାଖକୁ ଯିବା ପୂର୍ବରୁ ସେ ନିଜ ସାନ ଭାଇକୁ ଡାକି କହିଲେ– ଆମର ସାମାନ୍ୟ ସମ୍ପତ୍ତି ପାଇଁ କଳିଗୋଳ ଲାଗିବା କାହିଁକି– ବରଂ ତୋର ଯେତେ ଇଚ୍ଛା ସେତେ ସମ୍ପତ୍ତି ତୁ ନେଇ ଯା– ମୋର ଆପତ୍ତି ନାହିଁ ।

ବଡ଼ଭାଇର କଥା ଶୁଣି ସାନଭାଇ ଆଖିରୁ ଧାର ଧାର ଲୁହ ଗଡ଼ି ପଡ଼ିଲା । ସେ କହିଲା, "ଭାଇ ଏମିତି କଥା କୁହନ୍ତୁନି । ଆପଣ ବଡ଼ଭାଇ ବାପା ସମାନ, ବରଂ ଆପଣ ଯାହା ନବା କଥା ନିଅନ୍ତୁ । ଦୟା ହେଲେ ମୋତେ ଯାହା କିଛି ଦେବେ, ମୁଁ ସେତିକିରେ ସନ୍ତୁଷ୍ଟ । କିଛି ନ ଦେଲେ ବି ମୋର ଦୁଃଖ ନାହିଁ । ଆପଣଙ୍କ ନିଷ୍ପତ୍ତିକୁ ମୁଁ ଆନନ୍ଦରେ ମାନିନେବି ।"

ଏକଥା ଶୁଣି ବଡ଼ଭାଇ ସାନଭାଇକୁ ଆନନ୍ଦରେ କୁଣ୍ଢାଇ ପକାଇଲେ । ଆଉ ସମ୍ପତ୍ତିର ଭାଗ କଥା ଉଠିଲା ନାହିଁ । ଦୁହେଁ ହସଖୁସିରେ ଆଗ ଭଳି ରହିଲେ ।

ରାଜା ପଣ୍ଡିତଙ୍କୁ ପୁଣି ଦରବାରକୁ ଡକାଇ ପଠାଇଲେ । ପଣ୍ଡିତ ବିଲ୍ଲି ପୁରାଇ ଦରବାରରେ ଉପସ୍ଥିତ ହୋଇ କହିଲେ, ''ଛାମୁ ମୋର ଆଉ ବିଚାର ଦରକାର ନାହିଁ । ଆପଣଙ୍କ ଦିଆ ମହାଭାରତ ମୋର ଆଖି ଖୋଲି ଦେଇଛି । ଭାଇ ଭାଇ ମଧ୍ୟରେ କଳିଗୋଳ, ସମ୍ପତ୍ତିର ଲୋଭର ଫଳ ଯେ କେତେ ଭୟଙ୍କର, ଏହି ମହାଭାରତରେ ଅଠରଦିନିଆ ଯୁଦ୍ଧ ତାହା ସୂଚାଇ ଦେଉଛି । ତେଣୁ ଏହି ମହାଭାରତ ମୋତେ ଗୁରୁ ଭଳି ଉପଯୁକ୍ତ ଶିକ୍ଷା ଦେଇଛି ।

ଆପଣ ମୋତେ ମହାଭାରତକୁ ଅନୁବାଦ କରିବାକୁ ଦେଇ ଯେଉଁ ବିଚାରବୁଦ୍ଧିର ପରିଚୟ ଦେଇଛନ୍ତି, ସେଥିପାଇଁ ଆପଣଙ୍କ ପାଖରେ ମୁଁ କୃତଜ୍ଞ ।"

ରାଜା ହସି ହସି କହିଲେ– ଆପଣ ପଣ୍ଡିତ, ଆପଣ ନିଜେ ନିଜର ବିଚାରକ । ଏଣୁ ମୁଁ ଆପଣଙ୍କୁ କି ନ୍ୟାୟ ଦେଇଥା'ନ୍ତି ? ତେଣୁ ମୋର ମହାଭାରତ ଗ୍ରନ୍ଥଟି ଦେଲି । ଯାହାହେଉ ଆପଣଙ୍କ ଚେଷ୍ଟାରୁ ମୋର ପ୍ରଜାଗଣ ଏହି ତାମିଲ୍ ଭାଷାର ମହାଭାରତ ପଢ଼ିଶୁଣି ଉପକୃତ ହେବେ– ଏଣୁ ଆପଣଙ୍କୁ ଅଶେଷ ଧନ୍ୟବାଦ ।

*କୋରେଇ, ଯାଜପୁର* ❋❋

---

ଇଣ୍ଡିଆନ୍ କମ୍ୟୁନିଟି ପୋଲିସ ତଥା ଠେଙ୍ଗା ବାହିନୀର ସର୍ବ ଭାରତୀୟ ଚିଫ୍ କମାଣ୍ଡାଣ୍ଟ କୃଷକ ଲକ୍ଷ୍ମଣ ଦାସ ନିଜ କର୍ମଚାରୀମାନଙ୍କ ସହିତ ଓଡ଼ିଶା ସରକାରଙ୍କ ପୋଲିସ ବାହିନୀକୁ ସହଯୋଗ କରିବା ତଥା ପୁରୀ ନବକଳେବର ସମୟରେ ଆଇନ ଶୃଙ୍ଖଳା ରକ୍ଷା କରିବା ପାଇଁ ପୁରୀ ଯାଇ କାର୍ଯ୍ୟ ସଂପାଦନ ସାରି ଫେରିବା ବାଟରେ ସ୍ୱର୍ଗତ ନନ୍ଦଙ୍କ ଜନ୍ମସ୍ଥାନ ବାଇରୋଇ ଠାରେ ଅଟକିଥିଲେ । ଶିଶୁ ସାହିତ୍ୟିକ ପୁଣ୍ୟାତ୍ମା ରାମକୃଷ୍ଣ ନନ୍ଦଙ୍କ ଜନ୍ମସ୍ଥାନ ବୁଲି ଦେଖିବା ସହ ତାଙ୍କ ତୈଳଚିତ୍ରରେ ପୁଷ୍ପମାଲ୍ୟ ପ୍ରଦାନ କରିଥିଲେ । ଏହି ଅବସରରେ ସେ ଓ ତାଙ୍କ କର୍ମଚାରୀମାନେ ସ୍ୱର୍ଗତ ନନ୍ଦଙ୍କ ପତ୍ନୀ ସୌଦାମିନୀ ଦେବୀଙ୍କ

ସ୍ମୃତିରେ ପ୍ରତିଷ୍ଠିତ ସୌଦାମିନୀ ପାଠାଗାର ବୁଲି ଦେଖିଥିଲେ । ଶ୍ରୀ ଦାସ ଓ ତାଙ୍କ କର୍ମଚାରୀମାନଙ୍କୁ ରାମକୃଷ୍ଣ ନନ୍ଦ ସ୍ମୃତି ପରିଷଦ ପକ୍ଷରୁ ପ୍ରକାଶ ନନ୍ଦ ସ୍ୱାଗତ ସଂବର୍ଦ୍ଧନା ଜଣାଇଥିଲେ । ଅନ୍ୟମାନଙ୍କ ମଧ୍ୟରେ ଭବାନୀ ଶଙ୍କର ସାମନ୍ତରାୟ, ପ୍ରିୟନାଥ ଆଚାର୍ଯ୍ୟ, ଶିକ୍ଷକନେତା ରମାକାନ୍ତ ସ୍ୱାଇଁ, ଜ୍ଞାନ ରଂଜନ ସେନାପତି, ସମାଜସେବୀ ପ୍ରମୋଦ କୁମାର ନାୟକ ଓ ବାବୁ କିଶୋର ବେହେରା ପ୍ରମୁଖ ଉପସ୍ଥିତ ଥିଲେ । (ଫଟୋଚିତ୍ର ମଲାଟ ଭିତର ପୃଷ୍ଠାରେ)

---



## ପୁସ୍ତକ ପରିଚୟ

**ବିଭିନ୍ନ ରଂଗର ଧାନ**-- ଲେଖକ-**ଶ୍ରୀ ଫକୀର ଚରଣ ପାଢ଼ୀ,** ନୀଳଚକ୍ର ପ୍ରକାଶନ, ବୋଲକଣା, ବଡ଼ଗୁଆଳିପଡ଼ା, ବେରବୋଇ, ପୁରୀ, ମୂଲ୍ୟ- ୧୦୦ଟଙ୍କା ।

ଏହି ଶିଶୁ-ଗଳ୍ପ ପୁସ୍ତକଟିରେ ଅଭିଶପ୍ତ ମୂଷିକ, ଖଟର ମୂଲ୍ୟ ଖଟ କହିବ, କପୋତର କରାମତି, ଛେପ ନଦୀ ହେଲା ଇତ୍ୟାଦି ୧୩ଟି ଭତରା ଆଦିବାସୀଙ୍କର ଲୋକକଥା ରହିଛି । ଗଳ୍ପଗୁଡ଼ିକରେ ସୁଦୃଶ୍ୟ ଚିତ୍ର ମଧ୍ୟ ରହିଛି । ସବୁ ଗପ ଶିକ୍ଷଣୀୟ ଓ ସରଳ ଭାଷାରେ ଲିଖିତ । ଏହି ଲୋକକଥାଗୁଡ଼ିକ ପିଲାଙ୍କୁ କୁହୁକ ପେଡ଼ିର କାହାଣୀ ଭଳି ବୋଧ ହେବ । ରଂଗିନ ପ୍ରଚ୍ଛଦରେ ଭୀମ, କୁବେରଙ୍କ ଚିତ୍ର ସହିତ ବିଭିନ୍ନ ରଂଗର ଧାନର ଚିତ୍ର ବେଶ୍ ମନୋମୁଗ୍ଧକର ହୋଇଛି । ପୁସ୍ତିଟି ଆଦୃତ ହେଲେ ଲେଖକଙ୍କର ଶ୍ରମ ସାର୍ଥକ ହେବ ।

**କାଚ ଘରର ମାଛ**-- ଲେଖକ-**ଶ୍ରୀ ଅଜୟ କୁମାର ପଟ୍ଟନାୟକ,** ମୟୂରୀ ବିହାର, ଚତୁର୍ଥ ଲେନ୍, ସୋମନାଥ ନଗର, ଛତ୍ରପୁର, ଗଂଜାମ, ମୂଲ୍ୟ- ୬୦ଟଙ୍କା ମାତ୍ର ।

ଡିମେଇ ଆକାରର ଏହି ପୁସ୍ତକଟିରେ ଗାଈ, ବଳଦ, ଗଧ, ଓଟ, ମହୁମାଛି, ଗୁଣ୍ଡୁଚିମୂଷା, ପଞ୍ଜୁରୀ ଭିତରେ ଶାରୀ, ଇତ୍ୟାଦି ପଶୁପକ୍ଷୀ କୀଟପତଙ୍ଗଙ୍କ ବିଷୟରେ ୪୦ଟି ଶିଶୁକବିତା ରହିଛି । ପ୍ରତ୍ୟେକ କବିତାରେ ଛୋଟ ଛୋଟ ଚିତ୍ର ରହିଛି ଓ ପଶୁ, ପକ୍ଷୀ, କୀଟ ପତଙ୍ଗ ଉପରେ ଜାଣିବା କଥା ସହିତ କବିତା ରଚିତ ହୋଇଛି । ପ୍ରଚ୍ଛଦଟିରେ ମାଛ ଚିତ୍ର ଖୁବ୍ ସୁନ୍ଦର ହୋଇଛି । ପୁସ୍ତକଟିର ପ୍ରଚାର ଓ ପ୍ରସାର କାମନା କରୁଛୁ ।

**ଭଦ୍ରକର ମା' ଭଦ୍ରକାଳୀ**-- ଲେଖକ-**ଶ୍ରୀ ଗୋବିନ୍ଦ ପ୍ରସାଦ ଭଟ୍ଟାଚାର୍ଯ୍ୟ,** ଭାଟପଡ଼ା, ତିହିଡ଼ି, ଭଦ୍ରକ, ମୂଲ୍ୟ- ୫୦ଟଙ୍କା ମାତ୍ର ।

ଭଦ୍ରକର ମା' ଭଦ୍ରକାଳୀଙ୍କ ବିଷୟରେ ବର୍ଣ୍ଣନା ହୋଇଛି ଏହି ଡିମେଇ ୧/୮ ଆକାରର ପୁସ୍ତକଟିରେ । ଇତିହାସ ପୃଷ୍ଠାରେ ଭଦ୍ରକାଳୀ, ପ୍ରାଚୀନ ପୋଥିପୁରାଣରେ ଭଦ୍ରକାଳୀ, ଶ୍ୟାମାର୍ଚ୍ଚନା ନିରୂପଣ ଇତ୍ୟାଦି ଭଦ୍ରକାଳୀଙ୍କ ବିଷୟରେ ୧୩ଟି ତଥ୍ୟ ଏଥିରେ ରହିଛି । ରଂଗିନ ପ୍ରଚ୍ଛଦରେ ମା'ଭଦ୍ରକାଳୀଙ୍କର ଫଟୋ ରହିଛି । ପୁସ୍ତକଟିର ପ୍ରଚାର ଓ ପ୍ରସାର ଆଶା କରୁଛୁ । ✡✡

---




୩।୯-- ଓଡ଼ିଶାର ସ୍ୱନାମଧନ୍ୟା କଣ୍ଠଶିଳ୍ପୀ ତଥା ସାହିତ୍ୟିକା, ପ୍ରାଧ୍ୟାପିକା ଡ. ସୁଚିତ୍ରା ମହାପାତ୍ର ଏବଂ ବରିଷ୍ଠ ଆଇନଜୀବୀ ଚକ୍ରଧର ବେହେରାଙ୍କର ପରଲୋକ ।

୫।୯-- ବଲିଉଡ୍‌ର ପ୍ରତିଷ୍ଠିତ ସଂଗୀତ ନିର୍ଦ୍ଦେଶକ ଆଦେଶ ଶ୍ରୀବାସ୍ତବଙ୍କର ୫୧ ବର୍ଷରେ ପରଲୋକ । ୨୦ଟି ଚଳଚ୍ଚିତ୍ରର ସେ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ ।

୨୦।୯-- ଭାରତୀୟ କ୍ରିକେଟ୍ କଂଟ୍ରୋଲ ବୋର୍ଡର ସଭାପତି ଜଗମୋହନ ଡାଲମିଆଁଙ୍କର ୭୫ ବର୍ଷରେ ପରଲୋକ । ସେ ୪ବର୍ଷ ପାଇଁ ଆନ୍ତର୍ଜାତିକ କ୍ରିକେଟ୍ କଂଟ୍ରୋଲ ବୋର୍ଡର ସଭାପତି ମଧ୍ୟ ଥିଲେ ।

୨୧।୯-- ଆଧୁନିକ ଓଡ଼ିଆ ଗୀତିକବିତାର ଲୋକପ୍ରିୟ ଗୀତିକାର ନିଜାମ୍‌ଙ୍କର ୬୫ ବର୍ଷରେ ପରଲୋକ । ନୂପୁର କାହିଁକି ବାନ୍ଧିଲି, ନିଦଭରା ରାତି, ହୃଦୟର ଏହି ଶୂନ୍ୟତାକୁ... ସଙ୍ଗୀତଗୁଡ଼ିକ ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲା । ୪୦ ବର୍ଷ ଧରି ସେ ୧୫୦ଟି ସଫଳ ଗୀତରେ ଲେଖନୀ ଚାଳନା କରିଥିଲେ ।

## ଶବ୍ଦଧନ୍ଦା ଅକ୍ଟୋବର-୨୦୧୫

ଶ୍ରୀ ଧରଣୀଧର ବେହେରା

୧ । କାଗଜରେ ବା କାର୍ଡ୍ରେ ଘର କାଟି ଉତ୍ତର ଲେଖନ୍ତୁ ।
୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨।୧୦।୧୫
୭ । ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| ୧ | | ୨ | ୩ | ୪ | | ୫ |
|---|---|---|---|---|---|---|
| | ୬ | ୭ | | | ୮ | |
| | | ୯ | | | ୧୦ | |
| ୧୧ | | | ★ | ୧୨ | | |
| ୧୩ | | | | | ୧୪ | ★ |
| ୧୫ | | | | ୧୬ | | ୧୭ |
| | ★ | ୧୮ | | | ★ | |

### ସୂଚନା

**ବାମରୁ ଡାହାଣ--** ୧ । ଶୁଭପକ୍ଷୀ (୬), ୭ । ମକାଜାତୀୟ ଶସ୍ୟ (୩), ୮ । ମୁସଲ୍‌ମାନ ବିଚାରକ (୨), ୯ । କ୍ଷମତା (୪), ୧୧ । ଗୋଡ଼ି (୩), ୧୨ । ଅସୀମ (୩), ୧୩ । ଦଶରଥଙ୍କ ମାତା (୪), ୧୪ । ଜୋରିମାନା (୨), ୧୫ । ଚାନ୍ଦୁଆ (୪), ୧୬ । ବେଗ (୨), ୧୮ । ବଗ(୩) ।

**ଉପରୁ ତଳ--** ୧ । ମାହୁନ୍ତ (୪), ୨ । ସୂର୍ଯ୍ୟ (୪), ୩ । ପ୍ରକୋଷ୍ଠଯୁକ୍ତ ବଡ଼ ନୌକା (୩), ୪ । ପ୍ରେମ (୩), ୫ । ଯାଦୁକର (୪), ୬ । ବଡ଼ଖଟ (୩), ୧୦ । ବର୍ଷାକାଳ (୪), ୧୨ । ସପୁରି (୪), ୧୩ । ଠାର (୩), ୧୭ । ଦୀପାଧାର (୨) ।

-- *ସା: ମୋଗଲପାଟଣା, ପୋ.ଅ : ରାହାଣିଆଁ, କଟକ-୭୫୪୨୦୪*

---

**ସେପ୍ଟେମ୍ବର ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ମଧୁବାବୁ, ୪ । ପାୟସ, ୬ । ହାକିମ, ୭ । ସଗର, ୯ । ଦୀନ, ୧୧ । କାମନା, ୧୫ । ନୀରବ, ୧୭ । ମହାଶୟ, ୧୮ । ମଦନ ।

**ଉପରୁ ତଳ--** ୧ । ମହାନଦୀ, ୨ । ବାମନ, ୩ । ବୁଲାଣି, ୫ । ସରକାର, ୮ । ନମନୀୟ, ୧୦ । ନରମ, ୧୨ । ନାରଦ, ୧୩ । ସରମ, ୧୪ । କାହାଲୀ, ୧୬ । ବମନ ।

---

ଠିକ୍ ଉତ୍ତରଦାତାଙ୍କ ନାମ-- **ଇପ୍ସିତା ମିଶ୍ର,** ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାନୁଷ୍ଠାନ, ଚମ୍ପୁଆ, କେନ୍ଦୁଝର; **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର; **ବସନ୍ତ କୁମାର ମହାପାତ୍ର,** ଯଶୋବନ୍ତପୁର, ଜଗତସିଂହପୁର-୭୫୪୩୦୧୬; **ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ଼; **ଶାଶ୍ୱତୀ ଅର୍ଘ୍ୟରୂପା ସାହୁ,** (୯ମ) ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିର, ମଧୁସୂଦନ ନଗର, ଯାଜପୁର ।



## ଓଡ଼ିଶା ଖବର

୨୦ ।୮--ଓଡ଼ିଶାର ଅନନ୍ୟା ଶ୍ରୀତମ ନନ୍ଦଙ୍କର ସୋନି ଚ୍ୟାନେଲରେ ପ୍ରସାରିତ ଜୁନିୟର ଇଣ୍ଡିଆନ୍ ଆଇଡଲ୍ ଆଖ୍ୟା ଅର୍ଜନ ।

୨୭ ।୮-- କେନ୍ଦ୍ର ସରକାରଙ୍କର ସ୍ମାର୍ଟ ସିଟି ତାଲିକାରେ ଓଡ଼ିଶାର ଭୁବନେଶ୍ୱର ଓ ରାଉରକେଲା ସ୍ଥାନ ପାଇଛି ।

୨୮ ।୮--ରାଜ୍ୟରେ ୫ରୁ କମ୍ ଛାତ୍ରଛାତ୍ରୀ ଥିବା ୧୯୬ଟି ସ୍କୁଲ ବନ୍ଦ କରିବାକୁ ନିଷ୍ପତ୍ତି ।

୫ । ୯-- ଭଦ୍ରକ ଜିଲ୍ଲାର ବଂଗୋପସାଗର ଉପକୂଳରେ ଅବସ୍ଥିତ ହ୍ୱିଲର୍ ଦ୍ୱୀପକୁ ପୂର୍ବତନ ରାଷ୍ଟ୍ରପତି ଡଃ ଏ. ପି. ଜେ ଅବଦୁଲ୍ କାଲାମ୍ଙ୍କ ନାମରେ ନାମିତ କରାଯାଇଛି ।

୧୬ । ୯-- ସମଗ୍ର ରାଜ୍ୟରେ ୪୬୬ ଡେଙ୍ଗୁ ରୋଗୀ ଚିହ୍ନଟ ।

୧୭ । ୯--କଲିକତାରେ ଚାଲିଥିବା ଜାତୀୟ ଓପନ୍ ଆଥେଲେଟିକ୍ ଚମ୍ପିୟାନ୍‌ସିପ୍‌ରେ ୧୦୦ ମିଟର ଦୌଡ଼ରେ ଧାବିକା ଦ୍ୱିତୀ ଚାନ୍ଦଙ୍କୁ ସ୍ୱର୍ଣ୍ଣ ପଦକ ।

## ଭାରତ ଖବର

୧୮ । ୮-- ଉତ୍ତର ପ୍ରଦେଶରେ ସମସ୍ତ ନିର୍ବାଚିତ ଜନପ୍ରତିନିଧି, ସରକାରୀ ଅଧିକାରୀ, କର୍ମଚାରୀ ଓ ବିଚାରପତିଙ୍କର ପିଲାମାନେ ସରକାରୀ ପ୍ରାଥମିକ ବିଦ୍ୟାଳୟରେ ବାଧ୍ୟତାମୂଳକ ଭାବେ ପଢ଼ିବା ପାଇଁ ଆହ୍ଲାବାଦ୍ ହାଇକୋର୍ଟର ଗୁରୁତ୍ୱପୂର୍ଣ୍ଣ ରାୟ ।

--କ୍ରୀଡ଼ାକ୍ଷେତ୍ରରେ ଚଳିତ ବର୍ଷର ସମ୍ମାନଜନକ ଧ୍ୟାନଚାନ୍ଦ ପୁରସ୍କାର ପାଇଁ ଭଲିବଲ୍ ଅଧିନାୟକ ଟି.ପି.ପି. ନାୟାର୍, ଡେଭିସ୍ କପ୍ ଅଧିନାୟକ ଏସ୍.ପି. ମିଶ୍ର ଏବଂ ହକି ଗୋଲ୍ ରକ୍ଷକ ରୋମିଓ ଜେମସ୍ ମନୋନୀତ ।

୨୨ । ୮— ଆସାମରେ ବନ୍ୟା ଯୋଗୁଁ ୧୯ଟି ଜିଲ୍ଲାରେ ୬ ଲକ୍ଷ ଲୋକ ପ୍ରଭାବିତ ଓ ୪ ଜଣଙ୍କର ମୃତ୍ୟୁ ।

୨୬ । ୮-- ପଟେଲ୍ ସମ୍ପ୍ରଦାୟର ସଂରକ୍ଷଣ ଦାବିକୁ ନେଇ ଗୁଜୁରାଟରେ ହିଂସା । ପରିସ୍ଥିତି ସମ୍ଭାଳିବା ପାଇଁ ସେନା ମୁତୟନ ।

୮ । ୯-- ୟେମେନ୍‌ରେ ସାଉଦି ଆରବ ପକ୍ଷରୁ ବୋମାମାଡ଼ ଯୋଗୁଁ ୨୦ ଜଣ ଭାରତୀୟଙ୍କ ସମେତ ୩୬ ଜଣ ମୃତ ।

୧୦ । ୯-- ବିହାରର ମୋଟ ୨୪୩ଟି ବିଧାନସଭା ଆଇନ ପାଇଁ ନିର୍ବାଚନ ଅକ୍ଟୋବର ୧୨ରୁ ନଭେମ୍ବର ୫ ମଧ୍ୟରେ ୫ଟି ପର୍ଯ୍ୟାୟରେ ଅନୁଷ୍ଠିତ ହେବ ।

୧୧ । ୯— ଭାରତ ଓ ପାକିସ୍ତାନ ସୀମାରେ ଶାନ୍ତି ଓ ସ୍ଥିତାବସ୍ଥା ବଜାୟ ରଖିବା ପାଇଁ ଉଭୟ ପକ୍ଷରୁ ବିସ୍ତୃତ ଆଲୋଚନା ଜାରି ।

୧୨ । ୯-- ଉତ୍ତର ଲାଦାଖରେ ବର୍ତସେ କ୍ଷେତ୍ରରେ ଚୀନ୍ ପକ୍ଷରୁ ନିର୍ମାଣ କରାଯାଇଥିବା 'ୱାଚ୍‌ଟାୱାର୍'କୁ ଭାରତୀୟ ଯବାନମାନେ ଉଡ଼ାଇ ଦେଇଛନ୍ତି ।

୧୭ । ୯-- ଆବଶ୍ୟକ ଦକ୍ଷତା ନ ଥିବା କର୍ମଚାରୀଙ୍କୁ ହଟାଇବା ପାଇଁ କେନ୍ଦ୍ର ସରକାରଙ୍କ ନିଷ୍ପତ୍ତି ।

୨୧ । ୯--୫୦ ବର୍ଷର ସ୍ୱପ୍ନ ସଫଳ ହେଲା । କ୍ରିଷ୍ଣା ଓ ଗୋଦାବରୀ ନଦୀର ବିଧିବଦ୍ଧ ଭାବେ ସଂଯୋଗୀକରଣ ସଂପନ୍ନ । ଏହାଦ୍ୱାରା ଗୋଦାବରୀ ନଦୀରୁ ୮୦ ଟି.ଏମ୍.ସି ଜଳ କ୍ରିଷ୍ଣା ନଦୀକୁ ପ୍ରବାହିତ ହେବ ।

## ବିଦେଶ ଖବର

୨୭ । ୮— ଥାଇଲାଣ୍ଡର ରାଜଧାନୀ ବ୍ୟାଙ୍କକ୍‌ଠାରେ ଏକ ମନ୍ଦିର ବାହାରେ ବିସ୍ଫୋରଣରେ ୩୦ଜଣଙ୍କର ମୃତ୍ୟୁ ଓ ୮୧ ଜଣ ଆହତ ।

୫ । ୯-- ଲିବିୟାରେ ଗୃହଯୁଦ୍ଧ ଯୋଗୁଁ ସିରିୟା, ଲିବିୟା ଓ ଇରାକ୍, ଆଫଗାନିସ୍ତାନର ଶରଣାର୍ଥୀମାନଙ୍କ ପ୍ରବେଶ ସମସ୍ୟା ।

୧୨ । ୯— ମକ୍କାର ମୁଖ୍ୟ ମସଜିଦ୍ ଉପରେ ଏକ କ୍ରେନ୍ ଖସି ପଡ଼ିବାରୁ ୧୦୭ଜଣଙ୍କର ମୃତ୍ୟୁ ଓ ୨୦୦ଜଣ ଆହତ ।

୧୩ । ୯— ଭାରତୀୟ ଟେନିସ୍ ତାରକା ସାନିଆ ମିର୍ଜା ଓ ସ୍ୱିଜରଲ୍ୟାଣ୍ଡର ମାର୍ଟିନା ହିଙ୍ଗିସ୍ ଗ୍ରାଣ୍ଡସ୍ଲାମ୍ ୟୁ.ଏସ୍. ଓପନରେ ମହିଳା ଡବଲସ୍ ଚମ୍ପିୟାନ୍ ।

୧୪ । ୯-- ଅଷ୍ଟ୍ରେଲିଆ ପ୍ରଧାନମନ୍ତ୍ରୀ ଟୋନି ଆବୋଟ୍ ପଦଚ୍ୟୁତ । ମାଲ୍‌କମ୍ ଟର୍ନ ବୁଲ୍ ପରବର୍ତ୍ତୀ ପ୍ରଧାନମନ୍ତ୍ରୀ ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597